ନାନା ଋତୁରେ ନାନା ଫୁଲ । ସବୁ ଋତୁର ସବୁ ଫୁଲ ସମସ୍ତଙ୍କୁ ଭଲ ଲାଗେନା । ଏଇ ଚିହ୍ନା ଜଣା ଋତୁଙ୍କୁ ଛାଡ଼ି ବେଳେବେଳେ ନାଁ-ନଜଣା ଗୋଟାଏ ଗୋଟାଏ ଋତୁ କୁଆଡ଼ୁ ଆସି ଦେଖା ଦିଅନ୍ତି —
ଯେମିତିକି ଋତୁର ନାମ ପିପାସା । 'ପିପାସା' କ'ଣ
କେବେ ଗୋଟାଏ ଋତୁର ନାଁ ହୋଇପାରେ ! !
ପିପାସା ତ ସଦାବେଳେ ଶେଷହୀନ ।
ଏବେ ଅଛି, ଏବେ ନାହିଁ ।
ଆସିଲା-ଗଲା, ପୁଣି ଆସିଲା ।
କିନ୍ତୁ ଲାଭ କ'ଣ ଏଭଳି
ଋତୁ-ମାନଙ୍କର
ଆସିବା-ଯିବାରେ ।

ଯେମିତିକି 'ଗଛରେ ଫୁଲ ଫୁଟିଲେ ମାର୍ଚ୍ଚମାସର କ ଯାଏ ? କାଗଜରେ ଫୁଲ ଫୁଟିଲେ ହେଲା' । ଓଲଟା କଥା ନ ହେଲେ ବ ଅଜବ୍ ମନେହୁଏ ଏଇ ଯୁକ୍ତି । ତେବେ କ'ଣ ଏ ପିପାସା ଦୁଇଟା ତୃଷାର୍ତ୍ତ ଆଖିର, ଛଳ ଛଳ ଯୌବନର, ଫେନିଳ ମଦସ୍ରୋତର, ମଉଳିଲା ପଦ୍ମପାଖୁଡ଼ା ଭଳି ତୃଷିତ ଓଠର ? କେଜାଣି—



ଆହୁରି ଗଳ୍ପ ଏଇ ଲେଖକର :

ଗପ

କହ ଲଳିତା

ନଚିକେ ଶୃଙ୍ଗାର

ମୁଠାଏ ଶୂନ୍ୟତା

ସୂର୍ଯ୍ୟାସ୍ତର ଉପବନ



# ରକ୍ତର ନାମ ପିପାସା

ରତ୍ନାକର ଚଇନି



ଓଡ଼ିଶା ବୁକ୍ ଷ୍ଟୋର

# ଋତୁର ନାମ ପିପାସା
( ଗଳ୍ପ ଗୁଚ୍ଛ )

ରଚନା :
**ରତ୍ନାକର ଚଇନି**

ସତ୍ତ୍ୱାଧିକାର
**ଶ୍ରୀମତୀ ଲଲ ଚଇନି**

ପ୍ରକାଶକ :
**ଶ୍ରୀ ଗୋବିନ୍ଦଚରଣ ପାତ୍ର**
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ
କଟକ—୭୫୩୦୦୨

ପ୍ରଚ୍ଛଦ :
**ଶ୍ରୀ ଅସିତ ମୁଖାର୍ଜୀ**
ଶିଳ୍ପରୂପମ୍, କଟକ-୨

ପ୍ରଥମ ପ୍ରକାଶ :
୧୯୮୦, ୨୫ ଡିସେମ୍ବର

ମୁଦ୍ରାକର :
**ପାୟୋନିଅର ପ୍ରେସ**
ଶେଖବଜାର, କଟକ-୮

ମୂଲ୍ୟ
**ଦଶଟଙ୍କା ମାତ୍ର**



**RUTUR NAMA PIPASHA**
( SHORT STORIES )

*Written by* :
**Ratnakar Chaini**

*Published by* :
**Sri Govind Charan Patra**
ORISSA BOOK STORE
Binod Bihari
Cuttack—753002

*Cover Design* :
**Sri Asit Mukharjee**

*First Edition*
1980, 25th December

*Printer*
**Pioneer Press,**
Shaik Bazar,
Cuttack-8

*Price* :
**Rupees Ten Only**

ମୋର ପିତୃପ୍ରତିମ

ଶ୍ୱଶୁର

ଡାକ୍ତର ବୃନ୍ଦାବନଚନ୍ଦ୍ର ଦାଶଙ୍କୁ,—

ଯାହାଙ୍କର ନିଷ୍ଠାପର କର୍ମମୟ

ଜୀବନର ଆଦର୍ଶ

ମତେ ମୁଗ୍ଧ

କରିଛି

—ଲେଖକ

# କଥାକ୍ରମ



## — ଉପକଥା —





# ଉପକଥା

ପରିବେଶ ଓ ପରିସ୍ଥିତିରେ ପଡ଼ି ମଣିଷ ଆଜି ଏତେ ରୂପ ଧରି ପାରୁଛି, ଏତେ କଥା କହିପାରୁଛି; ପୁଣି ଏତେ ନିଜ ମନର କଥାକୁ ଲୁଚେଇ ପାରୁଛି ଯେ—ସେସବୁକୁ ଲିପିରେ ବାନ୍ଧି ରଖିବା ଏବେ ଆଉ ସହଜସାଧ୍ୟ ହେଉନି । ଅବଶ୍ୟ ଯୁଗ ଯୁଗ ଧରି ମଣିଷର ଜୀବନ ଓ ତା'ର ଉଭା-ପୋତା ରୂପଟାକୁ ଜାଣିବାପାଇଁ ପ୍ରବଳ ପ୍ରୟାସ ଚାଲି ଆସିଛି । ଆଜି ଏ ଅନୁଧ୍ୟାନ ପବ ସମ୍ପୂର୍ଣ୍ଣ ନୂଆ ନୁହେଁ ।

କିନ୍ତୁ କିଛିଟା ପରିମାଣରେ ନୂଆ ।

ସାହିତ୍ୟ ଏବେ ମଣିଷର ପରିବେଶ ଓ ତା'ର କ୍ରିୟାକଳାପ ଜନିତ ସମ୍ପର୍କକୁ ରୂପାୟିତ କରିବାରେ ଲିପ୍ତ । ସାମାଜିକ ବ୍ୟବହାରଗତ ଦୃଶ୍ୟମାନ ରୂପ ମଣିଷର ଅନ୍ତର୍ନିହିତ ଭାବାଲୋଡ଼ନକୁ ଅନେକ ପରିମାଣରେ ପରିପ୍ରକାଶ କରେ । ତା ସତ୍ତ୍ୱେ ଆଜିର ମଣିଷ ଅଚିହ୍ନା, ଅଜଣା, ଅବର୍ଣ୍ଣନୀୟ । ତାକୁ ଚିହ୍ନିବାପାଇଁ, ଜାଣିବାପାଇଁ ଓ ତା'ର ଭାବମୂର୍ତ୍ତି ଅଙ୍କନ କରିବାପାଇଁ କଳା-ଶିଳ୍ପ-ସାହିତ୍ୟରେ କେତେ ଯେ ପରୀକ୍ଷା-ନିରୀକ୍ଷା ଚାଲିଲା, ଚାଲିଛି, ତା'ର ଶେଷ ନାହିଁ ।

ସାହିତ୍ୟିକ ହେଲା ମାନବ ସଭ୍ୟତାର 'ଆଣ୍ଟେନା' ଭଳି ! ଟେଲିଭିଜନର ଆଣ୍ଟେନାରେ ଯେପରି ତା'ର ସୀମା ସରହଦରେ ଘଟୁଥିବା ଦୃଶ୍ୟାବଳୀ ତଥା ଘଟଣାବଳୀ ପ୍ରତିବିମ୍ବିତ ହୁଏ ଓ ତାହା ଟେଲିଭିଜନରେ ଦେଖାଯାଏ—ସାହିତ୍ୟିକର ଧର୍ମ ଅବିକଳ ସେଇୟା । ମାତ୍ର ଆଜିର ମଣିଷ ଏଇ 'ଆଣ୍ଟେନା'ରେ ନିଜର ସମ୍ପୂର୍ଣ୍ଣ ରୂପକୁ ଧରାଦେବାକୁ ନାରାଜ । ତା'ର ବହୁଧା ବିଭକ୍ତ ବ୍ୟକ୍ତିତ୍ୱକୁ ଓ ଅଭିନେତା ସୁଲଭ ସ୍ୱରୂପକୁ ଜାଣିପାରିବା ଦିଗରେ ପ୍ରଗତିଶୀଳ ବିଜ୍ଞାନ ବି ପରାସ୍ତ ।

ଆଧୁନିକ ସାହିତ୍ୟ ଆଧୁନିକ ମଣିଷକୁ ଚିହ୍ନିବା ଦିଗରେ କିନ୍ତୁ ଅଧିକ ସଫଳ ହେଉଛି, ବିଜ୍ଞାନ ଅପେକ୍ଷା । 'ଆଧୁନିକ' କହିଲେ ସେ ବୁଝୁଛି, ନୂତନର ପରଂପରା । ମାତ୍ର ପ୍ରକୃତରେ, ପରଂପରାରେ 'ବର୍ତ୍ତମାନ'କୁ ଆରୋପକାରୀ ପ୍ରଗତିଶୀଳ ନ ହେଲେ କିଛି 'ଆଧୁନିକ' ହୁଏ ନାହିଁ । ସେଇଥିପାଇଁ ବୋଧହୁଏ

ଆଜିର ସାହିତ୍ୟରୁ ପଶ୍ଚିମା ଭାବାନୁକରଣ ନିଶା କମି କମି ଯାଉଚି ଏବଂ ସୃଜନଶୀଳ ମଣିଷଟି ମୂଳକୁ ଫେରିଯିବାକୁ ଚାହୁଁଚି ।

ଆଜିର ସାହିତ୍ୟରେ ଏକ ନୂଆ ପ୍ରବଣତା ଦେଖା ଯାଉଚି ।

କାବ୍ୟ-କବିତା ଓ ନାଟକାଦିରେ ମିଥ୍ ପଶୁଚି ପ୍ରାଗୈତିହାସିକ ବିଶ୍ୱାସ-ବୋଧର ନବ ମୂଲ୍ୟାଙ୍କନ କରି । ବୌଦ୍ଧିକତାର ଜନ୍ତାରୁ ମୁକ୍ତ ହେବାପାଇଁ କଥାସାହିତ୍ୟ ପୁଣି ଖୋଜି ବସିଲାଣି କଥା-ଶିଳ୍ପର ମୂଳସ୍ରୋତକୁ । କିଛି ବର୍ଷ ପୂର୍ବେ ସଂପୂର୍ଣ୍ଣ ଭାବେ ବହିଷ୍କୃତ ହୋଇଯାଇଥିବା 'କାହାଣୀ' ଏବେ ପୁଣି ମୁହଁ ଦେଖାଇଲାଣି । ସମାଜ ଚେତନାଧର୍ମୀ ନବ୍ୟ ରୋମାଣ୍ଟିସିଜିମ୍ କଥା ସାହିତ୍ୟ-ଜଗତକୁ ପ୍ରବେଶ କରିବାର ଭିସା-ପାସପୋର୍ଟ ପାଇଲାଣି ।

ଏବେକାର ସାହିତ୍ୟ ମଣିଷକୁ ଚିହ୍ନିବାପାଇଁ ଓ ତାର ପରିଚୟ ପାଇବାପାଇଁ ଏକ ନୂଆ ଭାଷା । ଗପ କହିବାର ଭାଷା ତ ଆହୁରି ଅଲଗା । ଅନେକ ଅନୁଭୂତିର ତାହା ଏକ ଏକ ମାନସ ଚିତ୍ର ; ଏକ ଏକ କାହାଣୀ-ବୋମା । ମଞ୍ଚବିମୁଖ ଦର୍ଶକଙ୍କୁ ପୁଣି ମଞ୍ଚ ଆଡ଼କୁ ଟାଣି ଆଣିବାର ପ୍ରୟାସ ଯେପରି ନାଟକରେ ହେଉଚି, ଅବିକଳ ସେଇ ପ୍ରଚେଷ୍ଟା ଆରମ୍ଭ ହୋଇଚି ଗଳ୍ପରେ ।

କଥା କହିବାପାଇଁ ଏ ଉପକଥାର ସୂଚନା—

ଏସବୁ କହିବା ବି ଅନାବଶ୍ୟକ । ମାତ୍ର ନାନାଦି ପରୀକ୍ଷା-ନିରୀକ୍ଷା, କେତେ କେତେ ଇଜମ୍‌ର ଜୁଆରି ଏବଂ କେତେ ଦେଶ-ବିଦେଶର ଶୈଳୀ ନେଇ କସରତ୍ ଚାଲିଥିଲା ବେଳେ—ମୁଁ, ମୋର ଅନୁଭୂତି ଓ ଘରପଟର ଜଗତକୁ ନେଇ କସରତ୍ କରିଚି । ଏଥିରେ କେଉଁ ତତ୍ତ୍ୱ ରହିଲା, କେଉଁ ଦର୍ଶନ ରହିଲା, ସେଥିପ୍ରତି ମୁଁ ଆଦୌ ନିଷ୍ଠାପର ନୁହେଁ । ତାହାହିଁ ବୋଧେ ମୋର ଦୁର୍ବଳତା ।

• ସାହିତ୍ୟ ମୋପାଇଁ ପରୀକ୍ଷାଗାର ନୁହେଁ, ମୋର ଜୀବନ ।

ବେଦନାର ଗୁରୁ ଗମ୍ଭୀରତା ମତେ ଅସ୍ଥିର କଲେ ମୁଁ ଲେଖେ । ସେମିତି କେତେ କ'ଣ ଲେଖୁ ଲେଖୁ ତ ଏ ଗଳ୍ପଗୁଡ଼ିକର ଜନ୍ମ । ଏଥିରେ କ'ଣ ରହିଲା ବା ନ ରହିଲା, ମୁଁ ହିସାବ କରି କହିପାରିବିନି । କିନ୍ତୁ ଏତିକି କହିବି, ଏଥିରେ ଆରମ୍ଭରୁ ଶେଷଯାଏ ମୁଁ ଅଛି । 'ସେଇ ବୁଢ଼ାଟି' ଗଳ୍ପ ପଢ଼ି ଦାଶରଥି ପଟ୍ଟନାୟକ ଭଳି ବୟସ୍କ ବ୍ୟକ୍ତି ଭାବବିହ୍ୱଳ ହୋଇ ଲେଖିଲେ—'ମୁଁ ହେଉଚି ସେଇ କୁଲି ସର୍ଦ୍ଦାର' । 'ଜଣେ ରାଜା ଥିଲେ' ଗଳ୍ପଟି ଯେ ସତ ଏବଂ ସେ ଅଧ୍ୟାପକ ଜଣକ ମୋ ଛଡ଼ା କେହି ନୁହଁ—ଏହା ଅନେକଙ୍କର ବିଶ୍ୱାସ । ଅନେକଙ୍କ ପତ୍ରରେ ଏଇ କଥା । 'ମେଲେଡ଼ି ହାଉସ'ର ଘଟଣା ସତ୍ୟ କି ନୁହେଁ ବୋଲି ନିଜେ 'ଝଙ୍କାର'ର ପରିଚାଳନା ସଂପାଦକ ଶ୍ରୀ ସରୋଜ ରଂଜନ ମହାନ୍ତି, ମତେ ପଚାରିବାର ପ୍ରଶ୍ନ କରିଛନ୍ତି । ଏମିତି ଆହୁରି ଅନେକ—

ଏ କଥା କହିବାର ଉଦ୍ଦେଶ୍ୟ —

ମୁଁ ଆମ ପରିବେଶ ଓ ସାମାଜିକ କ୍ରିୟାକଳାପଜନିତ ସଂପର୍କରୁ ଛିନ୍ନ କରି ନାହିଁ । ଏହାଦ୍ୱାରା ଯଦି ମୋ ସୃଷ୍ଟିକୁ ଆଧୁନିକତା ସ୍ପର୍ଶ କରି ନ ପାରିଲା, ମୋର ସେଥିରେ ଦୁଃଖ ନାହିଁ । ଗାଳ୍ପିକ ହିସାବରେ କେହି ଯଦି ମତେ ଏଇଥିପାଇଁ ସ୍ୱୀକାର ନ କଲା, ମୁଁ କେବେ ଦୁଃଖିତ ହେବ ନାହିଁ । ଓଲଟି ବରଂ କହିବି, ଆମର ମାଟି-ପାଣି-ପବନକୁ ନେଇ, ଆମର ମନକୁ ଛୁଇଁଲା ଭଳି କଥା ଲେଖ । ଆମକୁ ସ୍ୱଦେଶୀ କର—ବିଦେଶୀ କର ନାହିଁ ।

ଏଇଟି ଧନ୍ୟବାଦ ଦେବା କଥା ।

ଅନେକ ଗୁଡ଼ାଏ ଅକଥା କହିଲିଣି । ଧନ୍ୟବାଦ ଦିଏଁ ଗୋବିନ୍ଦବାବୁଙ୍କୁ, ଅସିତବାବୁଙ୍କୁ—ଯେଉଁମାନେ ଏହାକୁ ବହି ରୂପ ଦେଲେ । ଧନ୍ୟବାଦ ମୋ ସ୍ତ୍ରୀ ଲିଲିକୁ , ଯିଏ ପାଣ୍ଡୁଲିପି ପ୍ରସ୍ତୁତିରେ ମତେ ସାହାଯ୍ୟ କରିଛି । ଏବଂ ଆପଣମାନଙ୍କୁ ସମସ୍ତଙ୍କୁ—

—ରତ୍ନାକର



# ଜଣେ ରାଜା ଥିଲେ

ସ୍ଥାନ, କାଳ, ପାତ୍ର ଭେଦରେ ପ୍ରତୀକ୍ଷାର ରାଗିଣୀ ଭିନ୍ନ ଭିନ୍ନ । ମାତ୍ର ପ୍ରତ୍ୟେକ ସ୍ଥଳରେ ପ୍ରତୀକ୍ଷା ପଛରେ ଆଶା-ନିରାଶାର ବେସୁରା ବାଜୁଥାଏ; ଧୈର୍ଯ୍ୟର ପରୀକ୍ଷାପାଇଁ ପରିବେଶ ସୃଷ୍ଟି କରାଯାଉଥାଏ ।

ଏ ନିଶ୍ଚୟ ଧୈର୍ଯ୍ୟ ପରୀକ୍ଷା ।

ଉଆସର ଏବେ ବଗିଚା ବୋଲାଉଥିବା ସାମ୍ନାପଟ ପ୍ରଶସ୍ତ ଭୂମିର ଆବୃତ ପ୍ରଶସ୍ତ ରାସ୍ତାରେ ଆମେ ଥିଲୁ ପ୍ରତୀକ୍ଷାରତ । ମହାରାଜାଙ୍କ ଡାକରା ପାଇଲେ ଦର୍ଶନ ନିମିତ୍ତ ଭିତରକୁ ଯିବାକୁ ହେବ । ଭିତରକୁ ଖବର ଗଲାଣି ଅନେକ ବେଳୁ । କେବଳ ଡାକରାକୁ ଅପେକ୍ଷା ।

ଡାକରା ଧରି କେହି ଜଣେ ଆସୁଥିବ ।

ଦୁଇଜଣଯାକ ମାଳୀ ତରାହରାହୋଇ ଆଗପଛକରି ଭିତରକୁ ଯାଇଛନ୍ତି । ବହୁତ ବେଳୁ ଗାଡ଼ିରେ ବସି ଆସିଥିବାରୁ ଠିଆହୋଇ ଗୋଡ଼ ସଳଖୁଥିଲୁ ମୁଁ ଏବଂ ନିତ୍ୟାନନ୍ଦ ବାବୁ । ଦୁହେଁ ଆସନ୍ନ ଦର୍ଶନ ଲାଭକରିବା ନିମିତ୍ତ ମାନସିକ ପ୍ରସ୍ତୁତ ହେଉଥିଲୁ । ତେଣୁ ଦୁହେଁ ଥିଲୁ ସ୍ୱାଭାବିକଭାବେ ନୀରବ । ନିତ୍ୟାନନ୍ଦ ବାବୁ ଧୋତି-ପଞ୍ଜାବୀ ପରିହିତ ହୋଇଥିବାରୁ ପବନ ତାଙ୍କ ସାଙ୍ଗରେ ବାଁ-କାଳିଆ ଖେଳି ତାଙ୍କୁ ଅସ୍ତବ୍ୟସ୍ତ କରି ପକାଉଥିଲା । ତଥାପି ସେ ସଂଭ୍ରମତାର ସହିତ ମର୍ଯ୍ୟାଦା ରକ୍ଷା କାର୍ଯ୍ୟ କରୁଥିଲେ ମଧ୍ୟ, ମୁହଁରେ ଶବ୍ଦଟିଏ ଉଚ୍ଚାରଣ କରୁ ନ ଥିଲେ ।

କିନ୍ତୁ ଧୋତି ସଜାଡ଼ୁଥିଲେ ବାରମ୍ବାର ।

ମୋର ସେଭଳି ଅସୁବିଧାରେ ପଡ଼ିବାର ଅବକାଶ ନ ଥିଲି । ମାତ୍ର ମୁଁ ଏକ ଅସମାଧିତ ଗୋଲକଧନ୍ଦାରେ ମନ୍ତ୍ରମୁଗ୍ଧଭଳି ଭାବ ଯାଉଥିଲି ପଛରେ ଛାଡ଼ି ଆସିଥିବା ଘଟଣାମାନଙ୍କୁ । ବୋଧହୁଏ ସମ୍ଭାବ୍ୟ ଘଟଣା ଘଟିବା ପୂର୍ବରୁ ଏଭଳି ଚିନ୍ତା ମନକୁ ଆସେ ଏବଂ ତାହା ଆସିବା ମଧ୍ୟ ସ୍ୱାଭାବିକ । ପ୍ରତୀକ୍ଷାର ପୃଷ୍ଠଭୂମିରେ ଘଟି ଯାଇଥିବା ଘଟଣାର ଦୃଶ୍ୟମାନ ପ୍ରତିବିମ୍ବିତ ହେଲା ।

ଆସିଲାବେଳର କଥାଗୁଡ଼ିକୁ ହିଁ ଭାବୁଥିଲି ।

ଏବଂ ପ୍ରତୀକ୍ଷା କରୁଥିଲି···

× × × ×

ରାସ୍ତାରେ ଘଟଣାମାନଙ୍କର ହାଟ ବସିଥିଲା ।

ବଡ଼ ଘଟଣା, ସାନ ଘଟଣା, ପୁଣି ବଡ଼-ସାନ ଘଟଣା । ଜିପ୍‌ରେ ମୁଁ ଏବଂ ନିତ୍ୟାନନ୍ଦ ବାବୁ ଶ୍ରେଦୁଅର ଖରା-ବର୍ଷାର ଲୁଚକାଳି ଖେଳକୁ ଏକରକମ ବେଖାତିର କରି ଚାଲୁଥିଲୁ ସେଇ ରାସ୍ତାରେ ଏବଂ ଘଟଣାମାନଙ୍କୁ ଦେଖି ଦେଖି ଯାଉଥିଲୁ ।

ଭାରି ଭଲ ଲାଗୁଥିଲା ସେସବୁ ଦୃଶ୍ୟ ।

ମୋରମ୍‌ଦିଆ ପାଲିସ୍ ରାସ୍ତା; ରାସ୍ତା କଡ଼େ କଡ଼େ ବର୍ଷାର ଅନିଶ୍ଚିତିଆ ପ୍ରକୃତି ଯୋଗୁ ହେଉ, କିମ୍ବା ଗୃହକର୍ତ୍ତ୍ରୀଙ୍କ ଅବହେଳା ହେତୁ ହେଉ—ଶୁଖିପାରି ନଥିବା ଉଷୁଆଁ ଧାନମାନ ଶୁଖୁଥିଲା । ଜାଗାଏ ଜାଗାଏ ଗୋଟାଏ ଗୋଟାଏ ନିକମା ବୁଢ଼ୀ ମନ ଭୁଲେଇବାପାଇଁ, — ଜିଦଖୋରିଆ ଅଥଚ କାନ୍ଦୁରା ଗ୍ରେଟ ନାତି-ନାତୁଣୀ ଙ୍କ ସାଙ୍ଗରେ ଧରି ଧାନଶୁଖା ପାଖରେ ବସିଥିଲେ, ମୁଣ୍ଡରେ ଲୁଗାକାନିକୁ ଚିରଚଉତ କରି ପକାଇ । ହାତରେ ଦଦରା ବାଡ଼ି ଖଣ୍ଡେ ଲେଖାଁ ଧରି, ବାରମ୍ବାର ବଣଭୋଜି ନାଁରେ ଆସି ଖୁମ୍ପାଏ ଖୁମ୍ପାଏ ଧାନ ନେଇ ଗ୍ଲୁଲି ଯାଉଥିବା କାଉମାନଙ୍କୁ ତଡ଼ିବାପାଇଁ ସେମାନେ ବସିଥିଲେ; ଅଥଚ କାଉମାନଙ୍କର ଝିଅଁପିଅଁର ମହୋତ୍ସବ ଲାଗି ରହିଥିଲା ।

ନିବଡ଼ ଗ୍ରାମ୍ୟ ପରିବେଶ ଯୋଗୁଁ ହେଉ କିମ୍ବା ରାସ୍ତାରେ ବନ୍ଧା ହୋଇଥିବା ଗାଈ-ଗୋରୁ ଯୋଗୁଁ ବା ଧାନଶୁଖା ହେତୁ ଅଥବା ମଣିଷଙ୍କ ଅସାବଧାନତା ହେତୁ ହେଉ—ଅବରୁଦ୍ଧ ରାସ୍ତାପାଇଁ ଗାଡ଼ିର ଗତି ମନ୍ଥର ହେଇଗଲେ, ଦଶିଥାଏ—ବୁଢ଼ୀ ପାଖରେ ବସି ସାମୟିକ କାନ୍ଦ ବନ୍ଦ କରିଥିବା ନାତି-ନାତୁଣୀ ଅଦୂରରୁ କର୍କଟିଏ ଧରିବାକୁ ଚେଷ୍ଟାକରି ବିଫଳ ହେବା ପରେ ପୁଣି କାନ୍ଦି ଉଠେ ପୂର୍ବକଥାର ପୁନରାବୃତ୍ତିକରି ଏବଂ ବୁଢ଼ୀଙ୍କୁ ସେ ଜିନିଷଟି ଆଣି ଦେବାପାଇଁ ଦାବିକରେ ।

ତେତିଶ ମାଇଲ ଦୂର ରାସ୍ତାରେ ଏମିତି ଅନେକ ଘଟଣା । କାଖରେ ଛତା ଜାକି, ହାତରେ ନାନାରଙ୍ଗର ସୂତାରେ କାରୁକାମ ହୋଇଥିବା କନା ବ୍ୟାଗ୍‌ଟିଏ ଝୁଲାଇ, କଚେରି ବା ବନ୍ଧୁଘର ଉଦ୍ଦେଶ୍ୟରେ ଚାଲିଥିବା ଗ୍ରାମ୍ୟ ବୁଦ୍ଧିଜୀବୀ,…ଅଯଥା ଲଙ୍ଗୁଳ ଟେକି ବାରମ୍ବାର ହମାଉଥିବା ଗାଈକୁ ପଘାରେ ବାନ୍ଧି ଭେଟେନାରି ହସ୍‌ପିଟାଲ ଆଡ଼କୁ ସ୍ୱପ୍ନ ବୁଣି ବୁଣି ଯାଉଥିବା କୃଷକ,… କୌତୁକମୀ ଗ୍ରାମ୍ୟ ବାଳିକା ମୁହଁରେ ହସର ଦରଫୁଟା ତରାଟଫୁଲ ଫୁଟେଇ ଜୀବନରେ ଆଦୌ ଦେଖି ନ ଥିବା ଭଳିଆ ଦୃଶ୍ୟ ଦେଖି ଠିଆହେବାର ଉତ୍ସୁକତା…ଏମିତି ଅନେକ ଘଟଣା, ଅନେକ ଦୃଶ୍ୟ ।

ମତେ ଏସବୁ ନୂଆ ନୂଆ ଲାଗୁଥିଲା । ଜୀବନକୁ ନୂଆ ସ୍ୱାଦ ଚଖେଇବା ପାଇଁ ଇଏସବୁ ପରଲଗା ଅନୁଭୂତି । ଗବେଷଣାପାଇଁ ନୂଆ ତଥ୍ୟ ସନ୍ଧାନରେ ଯିବାବେଳର ଇଏ ଗୋଟାଏ ଗୋଟାଏ ଅଦ୍ଭୁତ, ଅନାସ୍ୱାଦିତ ଖୋରାକ । ଗାଆଁରୁ ଆସି ସ୍ଥାୟୀ ସହରର ବାସିନ୍ଦା ହୋଇଗଲା ପରେ ଶୈଶବର ପରିଚିତ ଦୃଶ୍ୟସବୁ ମତେ ଏବେ ଅପରିଚିତ ଲାଗୁଚି । ମନେ ହେଉଚି ଏ ଘଟଣାସବୁ ଯେତେ ଅପରିଚିତ ହେଲେ ବି ଖୁବ୍ ଆପଣାର; ଦିଗହଜା ଗହୀରରେ ପଥଭ୍ରାନ୍ତ ଲୋକପାଇଁ ସବୁ ଅସ୍ପଷ୍ଟ ପାଦଚଲା ରାସ୍ତାଭଳି ।

ମଝିରେ ମଝିରେ ରାସ୍ତାପାଖ ଅଞ୍ଚଳମାନଙ୍କର ପ୍ରସିଦ୍ଧି, ଦେବାଦେବୀ ଏବଂ ରମଣୀୟ ସ୍ଥାନମାନଙ୍କ ବିଷୟରେ କିଛି କିଛି ବିବରଣୀ ଦେଉଥିଲେ ନିତ୍ୟାନନ୍ଦ ବାବୁ ।

ପ୍ରକୃତରେ ନିତ୍ୟାନନ୍ଦ ବାବୁହିଁ ଥିଲେ ଏଇ ଯାତ୍ରାର ଆୟୋଜକ । ମଧୁପୁର ରାଜବାଟୀରେ ମୋ ଗବେଷଣା ବିଷୟର ବହୁ ମୂଲ୍ୟବାନ୍ ପ୍ରାଚୀନ ତଥ୍ୟ ଲୁଚି ରହିଥିବା କଥାର ସନ୍ଧାନ ଦେଇଥିଲେ ସେ । ତେଣୁ ସେଠାରେ ପହଞ୍ଚାଇବାପାଇଁ ସମସ୍ତ ବନ୍ଦୋବସ୍ତ କରିସାରି ନିଜେ ମୋର ସଙ୍ଗୀ ସାଜିବାକୁ ସେ ଭୁଲି ନଥିଲେ । ମଧୁପୁର ରାଜବାଟୀ ଥିଲା ଜନଶ୍ରୁତି ଓ ତାଙ୍କ କଳ୍ପନାର ରହସ୍ୟମୟୀ ଅଲୁମତୀ ନଗର ବୋଲି ସେ ବହୁବାର ମତେ କହିଥିଲେ ।

ରାଜୁତି ଥିବା କାଳରେ ଏଇ ରାଜବାଟୀରେ କୁଆଡ଼େ ମାଛି ପଶିଲେ ନବଖଣ୍ଡ ହୋଇ ଯାଉଥିଲା । ରାଜା ଏମନ୍ତ ପ୍ରତାପୀ ଥିଲେ ଯେ, ଗର୍ଭିଣୀ ଗାଈ ତାଙ୍କ ବାଟ ଛାଡ଼ି ଦେଉଥିଲା । ନୃଶଂସତା ଓ କଠୋର ଶାସନକୁ ଭିତ୍ତିକରି ଏ ରାଜବଂଶ ସମ୍ବନ୍ଧରେ ବହୁ ଜନଶ୍ରୁତି, କେବଳ ଏଇ ଅଞ୍ଚଳରେ ନୁହେଁ, ଦୂର ଦୂରାନ୍ତରକୁ ବି ପରିବ୍ୟାପ୍ତ । ଯେଉଁ ରାଜାଙ୍କ ହାତରୁ ସରକାର ରାଜପଣ ଛଡ଼ାଇ ନେଇଥିଲେ, ସେହି ରାଜା ସାହେବ ରୁଦ୍ରପ୍ରତାପ ଏବେ ବି ଜୀବିତ । ଉଚ୍ଚଶିକ୍ଷା,

ରାଜନୈତିକ ତଥା ଆର୍ଥନୀତିକ ଦ୍ୱାନ୍ଦ୍ୱ ଦେଇ ତାଙ୍କ ପୁତ୍ରକନ୍ୟାମାନେ ଦେଶବିଦେଶ ଯାଇ ଅବସ୍ଥାପିତ ହୋଇଥିଲେ ମଧ୍ୟ ସ୍ୱୟଂ ମହାରାଜ ରୁଦ୍ରପ୍ରତାପ ଆଭିଜାତ୍ୟ ଓ ଅହମିକାର ବୋଝଗୁଡ଼ା ଧରି ପଡ଼ି ରହିଛନ୍ତି ଏଇଠି ।

ନିତ୍ୟାନନ୍ଦ ବାବୁଙ୍କ ମନରେ ତାଙ୍କୁ ଦେଖିବାର ପ୍ରବଳ ଇଚ୍ଛା । ତଥାପି ମୋ ଗବେଷଣା କର୍ମ ତାଙ୍କପାଇଁ ଏକ ଅବଲମ୍ବନ ନୁହେଁ । ମୁଁ ନ ଆସିଥିଲେ ବି, ହୁଏତ ଏକୁଟିଆ ସେ ଆସିଥାଆନ୍ତେ । ମାତ୍ର ଏକୁଟିଆ ତାଙ୍କୁ କୌଣସି ମଉଜ କରିବାକୁ ଭଲ ଲାଗେ ନାହିଁ ବୋଲି ସେ କହନ୍ତି । ଏକଥା ବୋଧହୁଏ ଅନେକ ପରିମାଣରେ ସତ ।

ଭାଦ୍ରବର ଗୁଡ଼ୁ-ଚମକା ମେଘ ନିଜର ଶକ୍ତି ଓ ସାମର୍ଥ୍ୟ ପ୍ରଦର୍ଶନ କରିବାର ପ୍ରୟାସ କଲାବେଳକୁ ଆମ ଗାଡ଼ି ରାସ୍ତାପାଖର ଗୋଟିଏ ଗ୍ରେଟିଆ ସହର ଭିତରେ ମୁଣ୍ଡଗୁଞ୍ଜି ସାରିଥିଲା । ମଧୁପୁର ରାଜବାଟୀ ସେଠାରୁ ଆଉ ମୋଟେ ପାଞ୍ଚ ମାଇଲ ଦୂର, ଏକଥା ଜାଣି ଟିକିଏ ଆଶ୍ୱସ୍ତ ହେଲି । ଏ ଆଡ଼ର ମାଇଲଗୁଡ଼ାକ ମତେ ଖୁବ୍ ଲମ୍ବା ମନେ ହେଉଥିଲେ । ସତେ ଯେମିତି ଯାତ୍ରାର ଶେଷ ନାହିଁ ।

ଦୁଇପଟେ ଭରା ଶସ୍ୟକ୍ଷେତ୍ର, ଅପରିଚିତ ପାହାଡ଼ ଓ ଗ୍ରାମ୍ୟ ପରିବେଶ, ମତେ ସାମୟିକ ଆନନ୍ଦ ଦେଉଥିଲେ ବି, ମାପଚୁପ ରାସ୍ତାର ଅସମ୍ଭବ ଦୀର୍ଘତା ମନକୁ ରହସ୍ୟାଚ୍ଛନ୍ନ କରି ପକାଉଥିଲା । ଏହା ନିତ୍ୟାନନ୍ଦ ବାବୁଙ୍କଦ୍ୱାରା ବର୍ଣ୍ଣିତ ପରିବେଶଠାରୁ ଆହୁରି ରହସ୍ୟମୟ । ତେଣୁ ବାରମ୍ବାର ଏକଥା ମନକୁ ଛୁଉଁଥିଲା, ଏପଟର ମାଇଲଗୁଡ଼ା ନିଶ୍ଚୟ ଖୁବ୍ ଲମ୍ବା ।

ବର୍ଷା ଛାଡ଼ିଲା । ସେତେବେଳକୁ ଆମେ ଚା'ପିଆ ସାରି ବାହାରିବାକୁ ପ୍ରସ୍ତୁତ ହୋଇ ସାରିଥିଲୁ । ବର୍ଷାଯୋଗୁଁ ସେତେ ନୁହେଁ, ଚା' ପିଇବା ଉପଲକ୍ଷ୍ୟକରି ଆମ ଗାଡ଼ି ଏଠି ଅଟକିଥିଲା । ଖାଣ୍ଟି ମଇଁଷି କ୍ଷୀରରେ ପ୍ରସିଦ୍ଧ ଚା' ଏ ସହରରେ ମିଳେ ବୋଲି ନିତ୍ୟାନନ୍ଦ ବାବୁ ଏକ ସମ୍ବାଦ ପରିବେଷଣ କରିସାରିଥିଲେ ବହୁ ଆଗରୁ । ମାତ୍ର ଚା' ଖାଇ ସାରିଲା ପରେ ସେ ପ୍ରସିଦ୍ଧିରେ କିଛି ଖଟ୍‌କା ଥିବାଭଳି ମନେ ହେଲା ଏବଂ ନିତ୍ୟାନନ୍ଦ ବାବୁ ତେଣୁ ଦୋକାନୀର ଧାର୍ଯ୍ୟ ଦରଠାରୁ କମ୍ ପଇସା ଦେବାକୁ ବାଧ୍ୟ ହୋଇଥିଲେ ।

ଶେଷରେ ଅଭିସାରିକାର ଯନ୍ତ୍ରଣାକୁ ଶେଷ ଘୋଷଣାକରି ଖଣ୍ଡିତା ନାରୀର ନାୟକ ଭଳି ହେଲାଭଳି ଆଗରେ ଦିଶିଗଲା ମଧୁପୁର ରାଜବାଟୀ । ଶେଷରାତିର କଳ୍ପଭଳି ରହସ୍ୟମୟ ଭାବନାର ପାତଳ ପରଦା ଆଗରେ ଝୁଲିଗଲା ସାମାନ୍ୟ ପାଣ୍ଡୁରିହୋଇ ।

ଏଇ ତେବେ ସେଇ ବହୁବର୍ଣ୍ଣିତ ମଧୁପୁର ରାଜବାଟୀ ।

ଅଗ୍ରାତର ବହୁ ସମ୍ଭ୍ରାନ୍ତ ଓ ଆଭିଜାତ୍ୟର ବୟସ୍କ ରୂପଧର ଠିଆ ହୋଇଥିଲା ସେ । ହୁଏତ ଦିନେ ଏଇ ରାଜବାଟୀ ଭିତରକୁ ପଶିବାପାଇଁ ବ୍ୟାଧିତ କୌତୂହଳ ନେଇ ଉଭା ହୋଇଥିବା ବ୍ୟକ୍ତି ସଶସ୍ତ୍ର ପ୍ରହରୀଙ୍କୁ ଦେଖି ଭୟ ପାଇଥିବ । ଭିତରକୁ ପଶିବାନିମିତ୍ତ ଦୁଃସାହସପାଇଁ ସେ ଅନେକ ଥର ଭାବିଥିବ; ପୁଣି ପଶିବାର କାରଣ ଜଣାଇବାପାଇଁ ଅନେକ ଯୁକ୍ତି ସଙ୍କଳନ କରି ରଖିଥିବ ମନରେ । ଶଙ୍କିତ ପଦରେ ଭିତରେ ପ୍ରବେଶ କଲାବେଳେ ନିଜକୁ ମୂଷାଛୁଆ ଭଳି ନଗଣ୍ୟ ମନେ କରିଥିବ ।

ଆମ ଗାଡ଼ି କିନ୍ତୁ ବିନା ବାଧାରେ ଉଆସ ଭିତରକୁ ପଶିଲା । କାରଣ ବାଧା ଦେବାପାଇଁ ଅଗ୍ରାତ ସେଠି ନ ଥିଲା । ବର୍ତ୍ତମାନଟା ନିହାତି ନିର୍ଜନ । ଦୂରରୁ ପରିତ୍ୟକ୍ତ ଭଳି ମନେ ହେଉଥିବା ରାଜବାଟୀର ଭିତରଟା ଅତ୍ୟନ୍ତ ସଜୀବ ଜଣାଗଲା । ପ୍ରଶସ୍ତ ରାଜରାସ୍ତା ଦୁଇପଟେ ଫୁଲଗଛର ଧାଡ଼ିମାନେ ପବନରେ ମୁଣ୍ଡ ହଲୁହଲୁ କରି ହସୁଥିଲେ । ସତେ ଯେମିତି ରାଜକୀୟ ସମ୍ମାନ ପ୍ରଦର୍ଶନ ପାଇଁ ସଜ୍ଜୀକୃତ ସିପାହୀ, ଅଭିବାଦନ ଜଣାଉଛନ୍ତି ଆମକୁ । ବାସ୍ତବିକ ଏ ଅନୁଭୂତି ଭିନ୍ନ ସ୍ୱାଦର, ଭିନ୍ନ ସ୍ୱପ୍ନର ।

ଉଆସ ଭିତରକୁ କିଛି ବାଟ ଯାଇ ସେଇ ପ୍ରଶସ୍ତ ରାସ୍ତାର ଗୋଟିଏ ପଟକୁ ଗାଡ଼ି ଛିଡ଼ା କରାଇଲୁ । ସେତେବେଳକୁ ବଗିଚା କାମରେ ବ୍ୟସ୍ତଥିବା ଦୁଇଜଣ ବୟସ୍କ ମାଳୀଙ୍କର ଦୃଷ୍ଟି ଆମ ଉପରେ ପଡ଼ି ସାରିଥିଲା ଏବଂ ତାଙ୍କ ଭିତରୁ ଜଣେ ଛିଡ଼ାହୋଇ ସାରିଥିଲା । ଗାଡ଼ି ବନ୍ଦକରି ଆମେ ଦୁହେଁ ତାଙ୍କ ପାଖକୁ ଗଲୁ ଓ ମହାରାଜାଙ୍କ ସାକ୍ଷାତ କରିବାକୁ ଆସିଥିବା ଅଭିପ୍ରାୟ ପ୍ରକାଶ କଲୁ ।

ଆମେ ବିଦେଶୀ, ଏ ସ୍ଥାନୀୟ ଲୋକ ନୁହଁ,—ଏକଥା ଜାଣିସାରିବା ପରେ ବି ସେ ଏପର୍ଯ୍ୟନ୍ତ ବସି ରହି କାର୍ଯ୍ୟବ୍ୟସ୍ତ ଥିବା ଲୋକଟା ତା'ର ବଡ଼ ବଡ଼ ଆଖିରେ, ଚହଲି ଚହଲି ଚାହାଣୀରେ ଚାହିଁଲା । ଲୋକଟା ବୃଦ୍ଧ ହେଲେ ବି ତା'ର ଆଖିଗୁଡ଼ିକ ଥିଲା ବଡ଼ ଭୟଙ୍କର । କଥାରେ ଓଜନ ଥିଲା ଖୁବ୍ ବେଶୀ । ଆମେ କାହିଁକି ମହାରାଜାଙ୍କୁ ଦେଖା କରିବାକୁ ଚାହୁଁ, ଆମର କାମ କ'ଣ, ମହାରାଜା ଭିନ୍ନ ଅନ୍ୟ କେହି ତାଙ୍କ କାମ କରିପାରିବେ କି ନା—ଏମିତି ଅନେକ ପ୍ରଶ୍ନ ପଚାରି ସେ ପ୍ରଥମେ ମତେ ବିରକ୍ତ କରିଦେଲା । ମୁଁ କ୍ଷୁବ୍ଧ ହୋଇଯିବା ଜାଣି ନିତ୍ୟାନନ୍ଦ ବାବୁ କଥାଟାକୁ ଚଳାଇ ନେବାପାଇଁ ବୁଝାଇ କହିଲେ ଯେ, ମୁଁ ଓଡ଼ିଶାର ସର୍ବବୃହତ୍ କଲେଜର ଗବେଷଣାରତ ଜଣେ ଅଧ୍ୟାପକ । ସେଇ ଗବେଷଣା ସମ୍ବନ୍ଧୀୟ କାର୍ଯ୍ୟରେ ମୁଁ ମହାରାଜାଙ୍କୁ ଦେଖା କରିବାକୁ ଚାହେଁ ।

ତା'ପରେ, ଏକପ୍ରକାର ଅନିଚ୍ଛା ଓ ବିରକ୍ତିମିଶା ଭଙ୍ଗୀରେ ବସିଥିବା ମାଙ୍କଡ଼ଟି ଉଠି ଉଆସ ଆଡ଼କୁ ମୁହାଁଇଲା ଏବଂ ତଳାହଳାହୋଇ ତା' ପଛେ ପଛେ ଗ୍ଭଲିଗଲା ଆଉ ବୁଢ଼ା ମାଙ୍କଡ଼ଟି, ଯିଏ ଏପର୍ଯ୍ୟନ୍ତ ଠିଆହୋଇ ଏ କଥାବାର୍ତ୍ତା ଶୁଣୁଥିଲା । ହଦେଇଁ ଯାଇଛନ୍ତି ତ ଯାଇଛନ୍ତି । ଏ ଯାବତ୍ ସମ୍ବାଦ ଧରି ଫେରିବାର ସୋରଶବ୍ଦ ବି ନାହିଁ ।

× × × ×

ପ୍ରତୀକ୍ଷାର ମୁହୂର୍ତ୍ତ ବଡ଼ ଯନ୍ତ୍ରଣାଦାୟକ । ପ୍ରସୂତି ଭବନ ବାହାରେ ପୁଅ ବା ଝିଅ ଜନ୍ମର ଖବର ପାଇବାପାଇଁ ଅପେକ୍ଷା କରିଥିବା ବାପ ଭଳି, ଏଠି ବି ନିର୍ଦ୍ଦିଷ୍ଟ ସମ୍ବାଦକୁ ଅପେକ୍ଷା । କେହି ଆସୁ ନାହାନ୍ତି, ପୁଣି କେହି ଭିତରକୁ ଯାଉ ନାହାନ୍ତି । ଯିବାର ଅବକାଶ ତ ନାହିଁ । କାରଣ ଭିତରକୁ ପଠାଇବା ଲାଗି ଆଉ ଏଠି ଲୋକ ନାହାଁନ୍ତି । ଅତଏବ ପ୍ରତୀକ୍ଷାହିଁ ଏକମାତ୍ର ଅବଲମ୍ବନ ।

ନିତ୍ୟାନନ୍ଦ ବାବୁ ଖୁବ୍ ସିଗାରେଟ୍‌ପ୍ରେମୀ । ମୁଁ ଲକ୍ଷ୍ୟ କରିଛି, ସେ ହାଆସିଲ ଓ ସିଗାରେଟ୍ ପ୍ୟାକେଟକୁ ହାତକୁ ଆଣି, ପୁଣି ପକେଟରେ ରଖିଲେଣି ଦୁଇ ତିନିଥର; କାଳେ ତାଆରି ଭିତରେ ମହାରାଜାଙ୍କ ଡ଼ାକରା ଆସିଯିବ । ସିଗାରେଟ୍ ଖାଇ ଖାଇ ସେଠିକି ଯିବା ଅଭଦ୍ରାମୀ । ଏଣେ ପୁଣି ଏ ଦୁର୍ମୂଲ୍ୟ ଯୁଗରେ ସିଗାରେଟ୍‌ଟିର ପୂର୍ଣ୍ଣ ସ୍ୱାଦ ଉପଭୋଗ ନ କରି ଅଧାରୁ ଫିଙ୍ଗି ଦେଇଯିବା ବଡ଼ କଷ୍ଟଦାୟକ । ମୋଟ ଉପରେ ସେ ଖୁବ୍ ଗୋଟାଏ ବଡ଼ ଦ୍ୱନ୍ଦ୍ୱରେ ପଡ଼ି ଯାଇଥିଲେ ।

ମହାରାଜାଙ୍କ ସହିତ ଆଗ କେଉଁଠୁ କଥାଟା ଆରମ୍ଭ କରିବି, ସେ ନେଇ ମୁଁ ବି ଦ୍ୱନ୍ଦ୍ୱରେ ପଡ଼ିଯାଇଥିଲି । ଗବେଷଣାର ଉପାଦାନ ସଂଗ୍ରହ, କେତୋଟି ଫଟୋ ଚିତ୍ର ଦେବା ଓ ଉଚିତ ମୂଲ୍ୟ ବିନିମୟରେ କିଛି ଦେଖିବା ପ୍ରାଚୀନ କଳା-ହସ୍ତତନ୍ତର ନମୁନା ନେବାର ଅନୁମତିପାଇଁ ନିବେଦନ କରିବାକୁ ସ୍ଥିର କରୁଥିଲି; ପୁଣି ପର ମୁହୂର୍ତ୍ତରେ ସିଲଟର ଲେଖା ଭଳି ତାକୁ ନିଭାଇ ପକାଇ ଭାବୁଥିଲି,—ଧେତ୍, ମହାରାଜା ନିଜେ ଦେବେନି ନିଜ ଆଭିଜାତ୍ୟର ପରିଚୟ ! ମୁଁ ଜଣେ ଗବେଷକଟି ! ନିଜ ବଂଶର ତଥା ନିଜର ଗର୍ବ ଆଭିଜାତ୍ୟ ପ୍ରକାଶ ପାଉ, ଏକଥା କିଏ ନ ଗ୍ଭହେ ? ମହାରାଜା ନିଶ୍ଚୟ ଇଚ୍ଛା କରିବେ ।

ଅପେକ୍ଷାର ପରିଧିରେ ଛଟପଟ ହେଉ ହେଉ କ୍ରମଶଃ ମୋର ଧୈର୍ଯ୍ୟଚ୍ୟୁତି ଘଟିଲା । ମୋର ମନେ ହେଲା, ରଜା ମହାରାଜା ମାନେଇ ଅଲସୁଆ । ସରକାର ଏ ପଦ ଉଠାଇଦେଇ ଖୁବ୍ ଭଲ କରିଛନ୍ତି । ଆଳସ୍ୟ ଓ ବିଳାସକୁ ସାଥୀକରି

ଏମାନେ ଅନ୍ୟଙ୍କୁ ଶାସନ କରିବାକୁ ଜନ୍ମ ହୋଇଥାଆନ୍ତି । ରାଜପଦବୀ ଉଠିଗଲେ ବି ଏମାନେ ସାଧାରଣ ହେବାକୁ ଏଯାଏ ମନ ବଳାଇ ନାହାଁନ୍ତି । କି ବିଚିତ୍ର ଏମାନଙ୍କର ମନୋଭାବ !

ଅବଶେଷରେ ମହାରାଜାଙ୍କ ଦର୍ଶନପାଇଁ ଡାକରା ଆସିଲା । ସମ୍ବାଦ ଧରି ଆସିଥିଲା ସେଇ ଲୋକଟି, ଯିଏ ଆମ ଗାଡ଼ି ଦେଖି ସର୍ବପ୍ରଥମେ ଉଠି ପଡ଼ିଥିଲା ଏବଂ ସବୁ କିଛି ବୁଝି, କିଛି ବୁଝେଇ ନ ପାରିବାର ଭଙ୍ଗୀ ଧରି ଯିଏ ଆମ ଯୁକ୍ତିତର୍କର ପ୍ରାରମ୍ଭରୁ ଶେଷ ପର୍ଯ୍ୟନ୍ତ ଡବ ଡବ କରି ଚାହିଁ ରହିଥିଲା । ସେ ଯେଉଁ ଆଦବ କାଇଦା ଦେଖାଇ ଆମକୁ ରାଜମହଲ ଭିତରକୁ ନେଇ ଯାଉଥିଲା, ତାହା ବହିପଢ଼ା ରାଜପୁରୀରେ ଅନ୍ୟ ଦେଶ ରାଜକୁମାରଙ୍କୁ ସସମ୍ମାନେ ନେଲା ଭଳି ମନେ ହେଉଥିଲା । ବୈତାଳିକମାନଙ୍କର ପ୍ରଶସ୍ତିଗାନ ଓ ଜୟଧ୍ୱନି ନ ଶୁଭୁଥିଲେ ବି ମୋର ପ୍ରତ୍ୟେକ ପଦପାତ ବେଶି ଓଜନିଆ ହୋଇ ଯାଇଥିଲା ଏବଂ ମୁଁ କୌଣସି ରାଜ୍ୟ ନଥିବା ଏକ ରାଜ୍ୟପୁତ୍ର ହୋଇ ଯାଇଥିଲି ।

ରାଜମହଲର ପୃଷ୍ଠାଏ ପୃଷ୍ଠାଏ ଅବକ୍ଷୟିଷ୍ଣୁ ସାମନ୍ତବାଦୀ ସଂସ୍କୃତିର ସ୍ୱାକ୍ଷର । ପ୍ରକୋଷ୍ଠ ପରେ ପ୍ରକୋଷ୍ଠ ପରିତ୍ୟକ୍ତ, ଶୂନ୍ୟ ଏବଂ ଅସଂଯତ । ଚୂନଧଉଳା ଅଗାଡରୁ କେତେକ ଜାଗା'ରୁ କାନ୍ଥର ପଲସ୍ତରା ଖସି ଆସୁ ଆସୁ ଅଟକି ଯାଇଛି । ଉଚ୍ଚ ଜାଲାକବାଟିରେ ଚେମେଣିଆମାନେ ସପରିବାର ବସବାସକରି କର୍କଶସ୍ୱରେ ଉଦ୍ଭଟ ବୁଲି ସଙ୍ଗୀତ ଶୁଣାଉଥାନ୍ତି । ଆମେ ନୀରବରେ ଚାଲୁଥିବାରୁ ସେମାନଙ୍କର ସ୍ୱର ବେଶ୍ ସ୍ପଷ୍ଟ ଶୁଣି ହେଉଥିଲା । ବେଳେବେଳେ ଆମକୁ ଅନୁସରଣ କରି ନେଉଥିବା ଲୋକଟାର ଅସ୍ପଷ୍ଟ ଇଙ୍ଗିତାତ୍ମକ ଭାଷା ମତେ ପ୍ରେତପୁରୀର ପ୍ରତିଧ୍ୱନି ଭଳି ବୋଧ ହେଉଥିଲା । ଆମେ ମନ୍ତ୍ରମୁଗ୍ଧ ଭଳି ତା' ପଛେ ପଛେ ଚାଲିଥିଲୁ ।

ବାହାରେ ବୋଧହୁଏ ସେତେବେଳକୁ ବର୍ଷା ଆରମ୍ଭ ହୋଇ ଯାଇଥିଲା । ରାଜମହଲ ଭିତରଟା ଟିକିଏ ଅନ୍ଧାରୁଆ ମନେ ହେଲା । ଆମେ ଦରବାର ହଲ୍ ଭିତରକୁ ପଶିଲାବେଳକୁ କାଁପଟେ ପଡ଼ିଲା ସିଉଜିଅମ,—ଯେଉଁଠି ବାଘ, ଭାଲୁ, ସିଂହଙ୍କ ବାସ୍ତବ ଦେହ କାଠିକୁଟା ଗର୍ଭିତହୋଇ ସଜା ହୋଇଥିଲା ।

କୋଉଆଡୁ ଡେରିଛି ଆଲୁଅ ଆସି ପ୍ରକୋଷ୍ଠଟିକୁ ଏକପ୍ରକାର ଆଲୋକିତ କରି ରଖିଥିଲା । ଏହି ଘରଟି ଥିଲା ଅପେକ୍ଷାକୃତ ପରିଚ୍ଛନ୍ନ ଓ ସୁସଜ୍ଜିତ । ପୁଣି ପୂର୍ବ ମହାରାଜାମାନଙ୍କର ପୂର୍ଣ୍ଣାବୟବ ତୈଳଚିତ୍ର ଜନ୍ମମୃତ୍ୟୁ ତାରିଖ ସହ ସଜାହୋଇ ରଖା ଯାଇଥିଲା । ବହୁ ବିଦେଶୀ ଉପହାର ତଥା ଅତୀତର ଖ୍ୟାତନାମା ଶିଳ୍ପୀମାନଙ୍କର ମୂଲ୍ୟବାନ୍ ଚିତ୍ରାଙ୍କନ ଏଠି ଶୋଭା ପାଉଥିଲା ।

ପ୍ରକୋଷ୍ଠର କାନ୍ଥମାନଙ୍କରେ ବିଚିତ୍ର ଆଲୋକବର୍ତ୍ତିକା ଧରି ନଗ୍ନ-ନାରୀମାନେ ଉଭା ହୋଇଥିଲେ । ଠିକ୍ ମଝିରେ ଏକ ବିରାଟ କାଚର ଝାଡ଼ ଆଲୁଅ । ମୁଁ ଠିକ୍ ତା' ତଳେ ଠିଆହୋଇ ଦେଖୁଥିଲି,—ସାମ୍ନାରେ ଥିବା ବିରାଟକାୟ ରୟାଲ୍ ବେଙ୍ଗଲ୍ ଟାଇଗରକୁ । ତାହା ଏଭଳି ସୁସଜ୍ଜିତ ଅବସ୍ଥାରେ ଥିଲା ଯେ, ଯେ-କେହି ଭାବିବ—ଏ ଜୀବନ୍ତ ବ୍ୟାଘ୍ରଟିକୁ ମହାରାଜ ପୋଷା ମନାଇଛନ୍ତି ଶତ୍ରୁମାନଙ୍କର ମୁକାବିଲା କରିବାପାଇଁ ।

ହଠାତ୍ ଗୋଟାଏ ଭୟଙ୍କର ଗର୍ଜନ ଶୁଣି ମୁଁ ଏତେଦୂର ଚମକି ପଡ଼ିଲି ଯେ, ମୋର ମନେ ହେଲା, ମୁଁ ମହାବଳ ବାଘର ମୁନିଆଁ ଦାନ୍ତର କବ୍‌ଜାରେ ପଡ଼ିଗଲି; କମ୍ପା ଉପରର ସେଇ ଝାଡ଼ ଆଲୁଅଟା ମୋ ମୁଣ୍ଡ ଉପରେ ପଡ଼ିଗଲା । ନିତ୍ୟାନନ୍ଦ ବାବୁ ମୋର ଖୁବ୍ ପାଖରେ ଥିଲେ ସୁଦ୍ଧା ଡରିଯାଇ ମତେ ଦୁଇ ହାତରେ ଜାବୁଡ଼ି ଧରିବାକୁ ଚେଷ୍ଟାକଲେ ଏବଂ ପର ମୁହୂର୍ତ୍ତରେ କାଳେ ମୁଁ ଡରି ଯାଇଥିବି ଓ ମୋର ଗାଇଡ୍ ସାଜି ଆସିଥିବାରୁ ମତେ ଅଭୟଦେବା ତାଙ୍କର କର୍ତ୍ତବ୍ୟ,—ଏଇଥିା ସେ ଅଭିନୟ କଲେ । ମୁଁ ତାଙ୍କ ମୁହଁକୁ ଚାହିଁ ଦେଖିଲି, ସେଠି କଣ୍ଟି ଆସୁଥିଲା ବୁନ୍ଦା ବୁନ୍ଦା ଝାଳ ।

ସେ ଭୟଙ୍କର ଶବ୍ଦଟା ମିଉଜିଅମ୍‌ରୁ ନୁହେଁ, ଦରବାର ହଲ୍‌ରୁ ଆସିଥିବା କଥା ମୁଁ ଯେତେବେଳେ ଅନୁମାନ କଲି—ସେ ଆଡ଼କୁ ଚାହିଁଲି, ଏଭଳି ଅସ୍ୱାଭାବିକତାର କାରଣ ଜାଣିବାପାଇଁ । ଦେଖିଲି, ଦରବାରରେ ନିଃସଙ୍ଗ ମହାରାଜା ବସିଛନ୍ତି । ସେ ଆମରି ଉଦ୍ଦେଶ୍ୟରେ ଏଭଳି ଗର୍ଜନ କରିଛନ୍ତି । ବୋଧହୁଏ ରାଜକୀୟ ଆଦବ୍ କାଏଦାରେ କିଛି ବ୍ୟତିକ୍ରମ ଘଟିଗଲା । ଆମେ ସମସ୍ତେ ବିନା ବାକ୍ୟ-ବ୍ୟୟରେ ସେଇଆଡ଼େ ମୁହାଁଇଲୁ ।

× × × ×

ମୁଁ ଆଶ୍ଚର୍ଯ୍ୟ ହେଲି—

ଇଏ ଥିଲା ମିଛ ବାଘର ଗର୍ଜନ । ଦରବାର ହଲ୍‌ରୁ ଗର୍ଜନ ଛାଡ଼ିଥିଲେ ସ୍ୱୟଂ ମହାରାଜ । କିନ୍ତୁ ଏ ସ୍ୱର, ଏ ବ୍ୟକ୍ତି କେହି ହେଲେ ମୋ ପାଖରେ ଅପରିଚିତ ନଥିଲେ । ମୁଁ ଯାଇ ମହାରାଜାଙ୍କ ସାମ୍ନାରେ ପହଞ୍ଚି ଥିଲେ ସୁଦ୍ଧା ତାଙ୍କୁ ଯଥାର୍ଥ ସମ୍ମାନ ଦେବାକୁ ଭୁଲିଗଲି । ମୋର ମନେ ହେଲା, ମହାରାଜାଙ୍କ ଭୂମିକାରେ ସେଇ ମାଳୀଟା ଅଭିନୟ କରୁଚି, ଯାହାର ବଡ଼ ବଡ଼ ଆଖି ଏବଂ ନଟାଳିଆ ପ୍ରଶ୍ନ ମତେ ବିରକ୍ତ କରିଥିଲା ।

ସେ ମତେ ଦିଶୁଥିଲେ ଆମ ଗାଁ ଯାତ୍ରାଦଳର ରାଜା ଭଳି । ହାତରେ ଗୋଟାଏ ପୁରୁଣା ଅଥଚ ସଯତ୍ନ ଧାଇତା ତରବାରି; ମୁଣ୍ଡରେ ଗୋଟାଏ

ସୁନା-ରୂପା ଜରିକାମକରା ମୁକୁଟ; ଦେହରେ ରାଜକୀୟ ପୋଷାକ । ସେ ପୋଷାକ ଯେମିତି ଯୁଗେ ହେଲ ପେଡ଼ିରେ ସାଇତା ହୋଇଥିଲା, ଏବେ ପାର୍ଟି ପଡ଼ିଲାରୁ ବାହାରିଚି । ତାଙ୍କ ଗୋଡ଼ରେ ବେକମୋଡ଼ା ନାଏରା ଜୋତା । ଦରବାର ହଲରେ ସେ ସିଂହାସନରେ ବସିଥିଲେ । ତାଙ୍କର ସେଇ ପରିଚିତ ଆଖିରେ ଗୁଡ଼ାଏ ବର୍ଷଣମୁଖୀ ବିରକ୍ତି ।

ସତେରେ, ମୁଁ ତାଙ୍କର ପୁର୍ବ ରୂପ ଦେଖି ସାରିଥିବାରୁ ସେ ମତେ ମିଛ-ରାଜା ବା ଯାତ୍ରାର ରାଜା ଭଳି ଦିଶୁଥିଲେ । ତା'ଛଡ଼ା ମୁଁ ତାଙ୍କୁ ଅନ୍ୟ କୌଣସି ଦୃଷ୍ଟିରେ ଦେଖିପାରୁ ନଥିଲି । ତେଣୁକରି ସଂଶୟ ଦୋଲାରେ ପଡ଼ି ଛଟପଟ ହେଉ ହେଉ ମୁଁ ତାଙ୍କୁ ମାନ୍ୟ କରିବାକୁ ଭୁଲି ଯାଇଥିଲି । ନିତ୍ୟାନନ୍ଦ ବାବୁ ତାଙ୍କୁ ନମସ୍କାର କରିସାରି ଯୋଡ଼ହସ୍ତରେ ଏଭଳି ଭଙ୍ଗୀରେ ଛିଡ଼ା ହୋଇଥିଲେ ଯେ, ତାହା ଅନ୍ତରର ସାଆନ୍ତିଆ ସଭ୍ୟତାର ସ୍ମୃତି ଜାଗ୍ରତ କରି ଦେଉଥିଲା । ସତେ ଯେମିତି, ଆମେ ଦୋଷୀ ରୂପେ ରାଜ-ଦରବାରକୁ ଭିଡ଼ାହୋଇ ଯାଇଛୁ ।

ରାଜାଙ୍କର ଦ୍ୱିତୀୟବାର ଗର୍ଜନ କଲାଭଳି ସ୍ୱର ଶୁଣିଲି, ଯେତେବେଳେ ସେ ମୋ ଉଦ୍ଦେଶ୍ୟରେ କହିଲେ—"ରାଜା ଆଉ ରାଜବଂଶ ଉପରେ ଗବେଷଣା କରୁଛ ପରା; ଯେଉଁ ସ୍ପେଶିସ୍ ଭାରତରୁ ନିଶ୍ଚିହ୍ନ ହେବାକୁ ବସିଚି । ସିଂହ ଭାରତରୁ ନିଃଶେଷ ହୋଇଆସିବା ଯୋଗୁ ତମ ସରକାର ବ୍ୟଥିତ; ପ୍ରତିବର୍ଷ ସେମାନଙ୍କର ହିସାବ ରଖୁଚି । ମାତ୍ର ଏଇ ସରିଆସୁଥିବା ରାଜା ଜାତିଟାର ହିସାବ ତମ ସରକାର ପାଖରେ ଅଛି ?

ହିଅଅ···, ତମେ କହିବ, ବହୁ ହାଇବ୍ରିଡ଼ ରାଜା ଗଣତାନ୍ତ୍ରିକ ପଦ୍ଧତିରେ ଏ ଦେଶରେ ତିଆରି ହେଲେଣି । ସେମାନଙ୍କର ରାଜ୍ୟ ନାହିଁ ସତ; ମାତ୍ର କ୍ଷମତା ଓ ସମ୍ପତ୍ତିରେ ସେମାନେ ଯେ କୌଣସି ରାଜାଙ୍କଠାରୁ ଅଧିକ ସୁଯୋଗ ଉପଭୋଗ କରୁଛନ୍ତି । ତମେ ଗବେଷଣା କରୁଚ ପରା,—ଗୋଟାଏ କଥା ଭାବି ଦେଖ, ଅଜା ଅମଳର ଘିଅ ହାଣ୍ଡି ଆଉ ଡଟକା ଘିଅ ହାଣ୍ଡି ଭିତରେ କ'ଣ କିଛି ତଫାତ୍ ନାହିଁ ? ଏଠି କେବଳ ଶୋଷଣ ମନୋଭାବ ରହିଚି; ସ୍ୱାଙ୍ଗ ପଛରେ ପରମ୍ପରା କୁଆଡ଼ୁ ଆସିବ ?

ଆମକୁ ଶ୍ରାସନ କରିଦେଇ କେତେ ନୂଆ ରାଜା ସରକାର ଗଢ଼ୁଛନ୍ତି, ଗଢ଼ନ୍ତୁ । ଦେଖୁନା, ଦେଶର ଅବସ୍ଥା କ'ଣ ହେଲାଣି ? ଶାସନ କେତେ ଢ଼ିଲା ! ସବୁଆଡ଼େ ଦ' ହାତିଆ ଖିଆ ଚାଲିଚି । ଏମାନେ ଖାଇ ଖାଇ ବଳିଲେ ସିନା ଲୋକଙ୍କ ପାଖକୁ ଯିବ । ସେତେବେଳେ ଜଣେ ଖାଉଥିଲା, ଏବେ ପଣ ପଣ ଖାଉଛନ୍ତି ।

ଗ୍ରୁଡ଼, ତମେ ରାଜାଙ୍କୁ ଦେଖା କରିବାକୁ ଆସିଥିଲ; ତମ ସରକାର ଯାହାକୁ ଗୋଟାଏ ସାଧାରଣ ମଣିଷରେ ରୂପାନ୍ତରିତ କରି ଛାଡ଼ି ଦେଇଛି । ତମେ କିନ୍ତୁ ଏଇ ରୁଦ୍ରପ୍ରତାପ ସାମନ୍ତସିଂହଙ୍କୁ ଦେଖାକରିବାକୁ ଆସି ନ ଥିଲ । ତେଣୁ ନିଜ ବଗିଚା କାମରେ ବ୍ୟସ୍ତଥିବା ଗୋଟାଏ ସାଧାରଣ ମଣିଷର କଥାବାର୍ତ୍ତାରେ ତମେ କ୍ଷୁବ୍ଧ ହୋଇ ଉଠିଲ । ତମରିପାଇଁ ବାଧହୋଇ ମତେ ପ୍ରାୟ ତିରିଶ ବର୍ଷ ତଳର ସ୍ମୃତିକୁ ବଖାଣିବାକୁ ପଡ଼ିଲା । କାରଣ କ'ଣ ଜାଣ ? ତମେ ଗବେଷକ; କୌଣସି ଗୋଟା ବଡ଼ କଲେଜରେ ଅଛ । ସେଠି ଯାଇ ହୁଏତ ବଡ଼ ବଡ଼ କଥା କହିବ, ଏ ରାଜା ତମକୁ ସାହାଯ୍ୟ କଲେନି ବୋଲି କାଗଜପତ୍ରରେ ଛାପିଦେବ । ତମକୁ ସାହାଯ୍ୟ କରିବା ଅପେକ୍ଷା, ମୁଁ—ଏ ରାଜବଂଶର ସୁନାମକୁ ଜଗିବାପାଇଁ ଆଗେଇ ଆସିଲି ।"

ଏଥରକ ମୁଁ ମୁହଁ ଖୋଲିଲି ରାଜ-ଦରବାରରେ । ସେ ପର୍ଯ୍ୟନ୍ତ ସେ ଆମକୁ ବସିବାକୁ ବି କହି ନ ଥିଲେ ଏକ ରାଜକୀୟ ଅହମିକା ନେଇ । ରାଜା କାହାରିକୁ ବସିବାକୁ କହନ୍ତି ନାହିଁ । ରାଜା ବସିଲେ ସମସ୍ତେ ବସନ୍ତି; ରାଜା ଉଠିଲେ ସମସ୍ତେ ଉଠନ୍ତି । ମହାରାଜା ରୁଦ୍ରପ୍ରତାପ ଏବେବି ଜଣେ ସାଧାରଣ ଲୋକ ନୁହଁନ୍ତି,ସେ ରାଜା । ଆମର ବସିବା ବା ଠିଆହେବା ସହିତ ତାଙ୍କର କିଛି ସମ୍ପର୍କ ନାହିଁ । ମୁଁ ଏଇଆ ମର୍ମେ ମର୍ମେ ଅନୁଭବକରି ବିନମ୍ରତା ସହିତ ତାଙ୍କୁ କହିଲି, "ଆପଣଙ୍କ ମନରେ ଆଘାତ ଦେଇଥିବାରୁ ମୁଁ ଦୁଃଖିତ; କିନ୍ତୁ ଏତିକି କହିବି—ମହାରାଜାଙ୍କୁ ବିରକ୍ତକରି ମୁଁ ଜଣେ ଖାଣ୍ଟି ମଣିଷର ସନ୍ଧାନ ପାଇଛି । ତାହାହିଁ ମୋର ନିଷ୍ଠାପର ଗବେଷଣାର ଫଳ" ।

ସାମନ୍ତଙ୍କ ଖୁସି କରିବାନିମିତ୍ତ ପାରିଷଦବର୍ଗଙ୍କ ହସର ନମୁନା ଦେଖାଇଲା ଭଳି ନିତ୍ୟାନନ୍ଦ ବାବୁ ହସି ଉଠିଲେ । ରାଜାଙ୍କର ମୁହଁର ଭାବ କିନ୍ତୁ ଥିଲା ଅପରିବର୍ତ୍ତିତ । ସତେ ଯେମିତି ସେ ରାଜକୀୟ ପୋଷାକ ପିନ୍ଧି ନିଜକୁ ଖୁବ୍ ଅସହାୟ ମଣୁଥିଲେ । ଖୁବ୍ ଶୀଘ୍ର ସେ ପୋଷାକ ସବୁକୁ କାଢି ଫିଙ୍ଗିଦେବାକୁ ସେ ଇଚ୍ଛା କରୁଥିଲେ । ମୁଁ ସେଇ ସୁଯୋଗରେ ତାଙ୍କର ଗୋଟାଏ ସ୍ନାପ୍ ଉଠାଇ ନେଲି । ସେ ଗୋଟାଏ କେମିତି ଅଦ୍ଭୁତ ଭଙ୍ଗୀରେ ମୋ ଆଡ଼କୁ ଚାହିଁଲେ ଏବଂ ତା' ପରେ ଭିତରକୁ ଚାଲିଗଲେ ।

ହଠାତ୍ ମୁଁ ଦ୍ୱନ୍ଦ୍ୱରେ ପଡ଼ି ନିତ୍ୟାନନ୍ଦ ବାବୁଙ୍କ ଆଡ଼କୁ ଚାହିଁଲି । ନିତ୍ୟାନନ୍ଦ ବାବୁ ସେଇ କଥା କହିଲେ—ଯାହା ନେଇ ମୁଁ ଦ୍ୱନ୍ଦ୍ୱରେ ପଡ଼ିଥିଲି । ମହାରାଜାଙ୍କ ଅନୁମତି ନ ନେଇ ଫଟୋ ନେବାଟା ଅନ୍ତତଃ ମୋ ପକ୍ଷେ ଭଲ ହେଲା ନାହିଁ । ତେଣୁ ଏଥିପାଇଁ କି ପ୍ରକାର ବିନମ୍ରତା ଦେଖାଇ ଭୁଲଟାକୁ ସ୍ୱୀକାର କରିବାକୁ

ହେବ, ମୁଁ ଭାବୁଥିବା ବେଳେ ଉନକପ୍ ବାମ୍ପଉଠା ଚା' ସହ୍ଵ ସେଇ ଚାକରଟି ଆସିଲା ଏବଂ ପରେ ପରେ ସାଧାରଣ ପୋଷାକରେ ପଶି ଆସିଲେ ମହାରାଜା ରୁଦ୍ରପ୍ରତାପ ।

ଏଇ ବୃଦ୍ଧ ଚାକରଟି ବ୍ୟତୀତ ଆଉ କେହି ଏ ରାଜ-ପ୍ରାସାଦରେ ଥିବାଭଳି ମୋର ମନେ ହେଲା ନାହିଁ । ଏତେ ଗୁଡ଼ାଏ ଘର, ଏତେ ବଡ଼ ପରିବେଶ, ତା' ଭିତରେ କ'ଣ କେବଳ ଦୁଇଟା ଲୋକ !

ମହାରାଜା ରୁଦ୍ରପ୍ରତାପ ଆମକୁ ଚା' ପିଇବାକୁ ନିର୍ଦ୍ଦେଶ ଦେଲେ । ଆମେ ଚା' ପିଇବାକୁ ଆରମ୍ଭ କରିବା ମାତ୍ରେ ବିସ୍ମୟହୋଇ କପ୍ ଭିତରକୁ ଚାହିଁବା ଘଟଣାଟା ମହାରାଜାଙ୍କ ଆଖିରୁ ବାଦ୍ ଗଲା ନାହିଁ । ସେ ସାଙ୍ଗେ ସାଙ୍ଗେ କହି ଉଠିଲେ,—ଚିନି ନାହିଁ । ସାରା ଦେଶରେ ଚିନିର ଉତ୍କଟ ଅଭାବ । ରେସନ୍ କାର୍ଡ଼ କଥା ମୁଁ ସ୍ୱପ୍ନରେ ଭାବି ନାହିଁ । ଅବଶ୍ୟ ମୋର ଅହଂ, ସେମିତିଥିଆ ଗୋଟାଏ କାର୍ଡ଼ ମୋ ନାଁରେ ହେଉ, ମତେ ବାଧା ଦେଇଛି । ମୁଁ ଭାବେ, ଆଗ ଅଭାବୀ ଲୋକ ଗୁଡ଼ାଙ୍କର ଚିନି ଅଭାବ ପୂରଣ ହୋଇଯାଉ । ତା' ପରେ ମୋ କଥା ।

ନା' ସେ ସମସ୍ୟାର ସମାଧାନ ହୋଇ ପାରିନାହିଁ । ଅଭାବ ପୂରଣ ହେଉ ନାହିଁ । ସବୁ ଆଡ଼େ ଲାଗି ରହିଛି ଆହୁରି, ଆହୁରି ଅଭାବ । ମୋ ରାଜ୍ୟରେ ଏଭଳି ପରିସ୍ଥିତି ହୋଇଥିଲେ ମୁଁ କ'ଣ କରିଥାଆନ୍ତି ଜାଣ ?—ଚିନି ଖାଇବା ନିଷିଦ୍ଧ କରିଦେଇ ଥାଆନ୍ତି ସାରା ରାଜ୍ୟରେ । ଖାଅ, ଅନ୍ୟ କିଛି ତା' ବଦଳରେ ।

ମୋଟ କଥା ହେଲା ଲୋକଙ୍କ ରୁଚି । ରୁଚି ବଦଳିଲେ ଅସାଧୁ ସାଧୁ ପାଲଟି ଯିବେ । କ'ଣ କରିବେ ସେ ସବୁ ଜିନିଷ ଘରେ ରଖି ? ତମ ସରକାର ଭାବୁଥିବେ, ସାରା ଦେଶର ସବୁ ଲୋକଙ୍କୁ ଡ଼ାଇବଟିସ୍ ହେଇ ଯାଆନ୍ତା କି—ଚିନି ସମସ୍ୟା ସମାଧାନ ହୋଇଯାଆନ୍ତା ।—

ମୁଁ ହୋ-ହୋ ହୋଇ ହସି ଉଠିଲି । ନିତ୍ୟାନନ୍ଦ ବାବୁ ବି ମନଖୋଲା ହସ ହସିଲେ । ହସିଲେ ମହାରାଜା ରୁଦ୍ରପ୍ରତାପ ଏକ ସାଧାରଣ ଖୁସି ମିଜାସୀ ମଣିଷର ହସ ।

ମୁଁ ଏଥର ସ୍ୱାଭାବିକଭାବରେ ତାଙ୍କ ସାଙ୍ଗରେ ଆଳାପ କରିବାକୁ ଆରମ୍ଭ କଲି । ତାଙ୍କ ପରିବାର ବିଷୟରେ ସେ କୌଣସି ଗୋପନୀୟତା ନ ରଖି ସବୁ କଥା କହି ଚାଲିଲେ । ତା' ପରେ ଗୋଟାଏ ପରେ ଗୋଟାଏ ପ୍ରକୋଷ୍ଠ ବୁଲାଇ ଦେଖାଇଲେ ସେ । ସତୁରି ବର୍ଷ ବୟସ୍କ ମହାରାଜାଙ୍କ ଦର୍ପୀୟାନ୍ ବପୁରେ ଏକ ସଂଯତ ସହଜାତ ଅଭିମାନକୁ ମୁଁ ଚିହ୍ନିଲି ଓ କିଛି ପରିମାଣରେ ମାପିଲି ।

ସେ ଏ ଉଆସ ଛାଡ଼ି ଅନ୍ୟ କୁଆଡ଼େ ଯିବାକୁ ଚାହାନ୍ତି ନାହିଁ । ଏଇଟା ତାଙ୍କର ଗୋଟାଏ ମୋହ ନୁହେଁ, ଅହମିକା ନୁହେଁ, ପରମ୍ପରା ପ୍ରତି ଆସକ୍ତି । ବଡ଼ ଝିଅ ତା'ର ସ୍ୱାମୀ ସହିତ ଜର୍ମାନରେ । ଗୋଟାଏ ବୋଲି ପୁଅ । ବମ୍ବେରେ ବ୍ୟବସାୟ କରୁଛି । କି ବ୍ୟବସାୟ, ଜାଣିବାକୁ ସେ କେବେ ଆଗ୍ରହୀ ହୋଇ ନାହାନ୍ତି । ତେବେ ସେ ବ୍ୟବସାୟ ଭଲ ଚାଲୁ ନାହିଁ । ମୋଟ ଉପରେ ତାକୁ ବ୍ୟବସାୟ କରିବାର କଳା ଜଣା ନାହିଁ । ସେ ନିଜକୁ ନେଇ ଏ ଯାବତ୍ ସ୍ୱପ୍ନ ଦେଖୁଛି । ଧନେ ହେଲେ ସେ ଏଠିକୁ ଆସିବାକୁ ଇଚ୍ଛାକରେ ନା । ମଝିରେ ମଝିରେ ଚିଠି ଲେଖେ— "ଭଲ ଅଛୁ ।"

ତାଙ୍କର ଗୋଟିଏ ମାତ୍ର ଚିନ୍ତା ସାନଝିଅ ରୂପମଞ୍ଜରୀକୁ କେନ୍ଦ୍ରକରି । ସେ ଏ ପର୍ଯ୍ୟନ୍ତ ଅବିବାହିତା । ବୟସ ଉତ୍ତୀର୍ଣ୍ଣ ହେବାକୁ ବସିଲାଣି । ରାଜ୍ୟ ଚାଲିଗଲା ବର୍ଷ ଚାରି ଜନ୍ମ । ବଡ଼ ହତଭାଗିନୀ ସେ । ଆଜିଯାଏ ଯୋଗ୍ୟ ବରଟିଏ ପାଇ ନାହାନ୍ତି । କିନ୍ତୁ ଏକଥା କହିଲା ବେଳେ ଆର୍ଥିକ ପ୍ରଚ୍ଛନ୍ନ ହତାଶାର ରାଗିଣୀ ତାଙ୍କ କଥାରେ ଫୁଟି ଉଠୁଥିଲା ।

ତାଙ୍କର ମୁହଁରୁ ପୁଣି ଶୁଣିଲି, ରୂପମଞ୍ଜରୀନାମକୁ-ମାତ୍ର ଏଠି ରହେ । ତା'ର ଅଧିକାଂଶ ସମୟ କଟେ ସମୁଦ୍ର କୂଳ 'ପାରିଜାତ' ହୋଟେଲର ପଞ୍ଜାବୀ ମାଲିକ ଘରେ । ରୁଦ୍ରପ୍ରତାପ ନିଃସଙ୍କୋଚରେ ପୁଣି କହିଲେ—'ପଞ୍ଜାବୀ ଯୁବକଟି ଯଦି ମତ ନ ବଦଳାଏ, ତେବେ ଏଇ ବର୍ଷ ରୂପମଞ୍ଜରୀର ବିବାହ ତା'ର ସହିତ ସମ୍ପନ୍ନ କରିଦେବ । ଭାବୁଛି, କିଛି କ୍ଷତି ହେବନି ।

ମୁଁ ରାଜାଙ୍କ ପୋଥିଘରେ ସଜ୍ଜାହୋଇ ଥୁଆ ହୋଇଥିବା କୀଟଦ୍ରଷ୍ଟ ପୋଥିମାନଙ୍କର ପ୍ରଶଂସାକରିବା ଅବକାଶରେ କହି ପକେଇଲି—'ଆପଣଙ୍କ ଭଳି ସ୍ପଷ୍ଟବାଦୀ ଚରିତ୍ର ଜୀବନରେ ମୁଁ ଖୁବ୍ କମ୍ ଦେଖିଛି ।'

ସେ ମୋ କଥାକୁ ବୋଧହୁଏ ହଜମ କରିପାରିଲେ ନାହିଁ । କଥାର ମୋଡ଼ ବଦଳାଇ କହିଲେ—'ଏ ପୋଥିଗୁଡ଼ାକ ତମର କ'ଣ ଦରକାରରେ ଆସିବ ମୁଁ ଜାଣେନା; ତେବେ ତମେ ଏଥିରୁ ଯାହା ଇଚ୍ଛା ନେଇଯାଇପାର । କୀଟମାନଙ୍କ କବଳରୁ ଉଦ୍ଧାରପାଇ ଏସବୁ ଅନ୍ୟତ୍ର ଚାଲିଗଲେ ମୁଁ ଅନ୍ତତଃ ଶାନ୍ତି ପାଆନ୍ତି ।'

ମୁଁ ଗୋଟାଏ କଥା ଚିନ୍ତା କରିସାରି ମହାରାଜା ରୁଦ୍ରପ୍ରତାପଙ୍କୁ କହିବି କି କହିବିନି, ଭାବୁଥିଲି । ସେତେବେଳକୁ ସେ ଉପହାର ସୂତ୍ରରେ ଚାରି ପାଞ୍ଚଟା ପୋଥି ମତେ ଦେଇସାରିଥାଲେ । ସେଗୁଡ଼ିକୁ ମୁଁ ଆବଶ୍ୟକ ମନେକରି ଗ୍ରହଣ କରିସାରି ହଠାତ୍ କହି ପକାଇଲି—'ମହାରାଜ ! ଆପଣ ଯଦି କିଛି ମନେ ନ କରିବେ,

ମୁଁ ଗୋଟାଏ କଥା କହିବ । ଆପଣଙ୍କର ଏ ପୋଥିଗୁଡ଼ିକୁ ଯଦି ମିଉଜିଅମକୁ ବିକ୍ରୀ କରି ଦିଅନ୍ତେ, ଅନ୍ତତଃ ଦଶ ପନ୍ଦର ହଜାରରୁ କମ୍ ଟଙ୍କା ମିଳନ୍ତାନି । ଆପଣ ଚିନ୍ତାରୁ ରକ୍ଷା ପାଆନ୍ତେ ଏବଂ ସେଠି ଏଗୁଡ଼ିକର ସଦ୍‌ବ୍ୟବହାର ହୋଇପାରନ୍ତା । ଆପଣ ସମ୍ମତି ଜଣାଇଲେ ମୁଁ ସେମାନଙ୍କୁ ଏ ଖବର ଦେଇ ଦିଅନ୍ତି ।’

ମୋ କଥାଟି କାଳେ ତାଙ୍କ ମନରେ ଦୁଃଖ ଦେଇଥିବ, ଏଇଆ ଭାବି ତାଙ୍କ ମୁହଁକୁ ଚାହିଁଲି ଅନେକ ବେଳ । ସେ ଗମ୍ଭୀର ଭାବରେ କ’ଣ ଭାବୁଥିଲେ । ଆମେ ଫେରିଲା ପର୍ଯ୍ୟନ୍ତ ସେ ଏ ବିଷୟରେ କିଛି ମତ ଦେଲେ ନାହିଁ । ମହାରାଜାଙ୍କଠାରୁ ବିଦାୟ ନେଇ ଆମେ ଗାଡ଼ିରେ ବସିବା ପର୍ଯ୍ୟନ୍ତ ମୁଁ ନିଜକୁ ଦୋଷୀ ମନେ କରୁଥିଲି । ଭାବୁଥିଲି, ମହାରାଜାଙ୍କୁ ଏଭଳି ପ୍ରସ୍ତାବ ଦେବା ଉଚିତ ହୋଇନାହିଁ ମୋର ।

ଗାଡ଼ି ଛାଡ଼ିବା ମୁହୂର୍ତ୍ତ ।

ପରସ୍ପରଠାରୁ ବିଦାୟ ନେବାବେଳେ ମୁଁ ହାତଯୋଡ଼ି କହି ଉଠିଲି— ‘ମହାରାଜ ! ମୁଁ ମୋର କଥାବାର୍ତ୍ତା ଓ ବ୍ୟବହାରରେ ଅନେକ ତ୍ରୁଟି ଦେଖାଇଛି, ସେଥିପାଇଁ କ୍ଷମା ଦେବେ । ଆପଣଙ୍କ ସାହାଯ୍ୟ ସହାନୁଭୂତି ମୋପାଇଁ ଚିର ଅଭୁଲା ରହିବ’ ।

ଗାଡ଼ି ଛାଡ଼ି ଦେଉଥିଲା ।

ମହାରାଜା ଗାଡ଼ି ଉପରେ ହାତ ପକାଇ ହଠାତ୍ କହି ଉଠିଲେ—ନା ନା, ମୁଁ ସେତିକିବେଳୁ ଭାବୁଚି ପୋଥିଗୁଡ଼ିକ ବିକ୍ରୀ କରାଇଦେଲେ ତ ତମର ଦାୟିତ୍ୱ ଶେଷ ହୋଇଯିବ ନାହିଁ—ତା’ ସହିତ ରୂପମଞ୍ଜରୀର ବିଭାଘର ସଂଶ୍ଳିଷ୍ଟ । ତମେ ଆସିବାକୁ ଭୁଲ ନଯାଅ ଯେମିତି । ମୁଁ ସମ୍ବାଦ ଦେବି ।’

ବିଦାୟ ପର୍ବ ପରେ ଆମେ ଫେରିଲୁ ।

ଫେରିଲାବେଳେ ଅପରାହ୍ଣର ଅପରିଷ୍କାର ସୂର୍ଯ୍ୟ ଛିଣ୍ଡା ଛିଣ୍ଡା ମେଘର କାନୁଅରେ ଲଟପଟ ହେଉଥିଲା । ଗଲାବେଳର ଗ୍ରାମ୍ୟ ଦୃଶ୍ୟ ଆଉ ମତେ ବିସ୍ମିତ କଲା ନାହିଁ, କିମ୍ବା ଭାବ-ବିଭୋର କଲା ନାହିଁ । ମୁଁ କେବଳ ଭାବି ଭାବି ଫେରୁଥିଲି, ମଧୁପୁର ରାଜବାଟୀର ସେଇ ଜୀଅନ୍ତା ମଣିଷଟିର କଥା ।



# ତାରାଭରା ଆକାଶ

ହାଇଗୁଡ଼ାକ ଏମିତି ଉଚ୍ଛାଟହୋଇ ବାହାରି ଆସୁଥିଲେ ଯେ, ଯେ କେହି ଭାବିବ, ଏଗୁଡ଼ାକୁ କିଏ ମନ୍ତ୍ର କରିଦେଇଚି । ତୁହାକୁ ତୁହା ସେମାନେ ମାଡ଼ି ଆସୁଥିଲେ ଶେଷହୀନ ପଙ୍ଗପାଳ ଦଳ ଭଳି ।

[illegible] ଆଖିରେ ନିଦପାଇଁ ଖୋରାକ ଥିଲା, କିନ୍ତୁ ନିଦ ମାଡ଼ୁ ନଥିଲା । ଇଏ ଏକ ଅଦ୍ଭୁତ ପରିସ୍ଥିତି । ଏଭଳି ଅବସ୍ଥାରେ ହାଇ ମାରି ମାରି, ସେଇ ଇଉକାଲିପଟସ୍ ଗଛର ପତ୍ରରେ ଚକ୍‌ଚକ୍ କରୁଥିବା ତେରଛା ଆଲୁଅକୁ ଦେଖିବାରେ ଏବଂ ସୀମାହୀନ ଅଚ୍ଛିଣ୍ଡା ଭାବନାରେ ମଜ୍ଜିବାରେ, କେହି ଯଦି ତା' ସହିତ ପ୍ରତିଯୋଗିତା କରନ୍ତା, ସେ ନିଶ୍ଚୟ ହାରି ମାନନ୍ତା ।

ହାରି ମାନିବା କୋଉ ବିଚିତ୍ର କଥା କି ଏମିତି ! ଜୀବନରେ ବହୁ କ୍ଷେତ୍ରରେ ବାରମ୍ବାର ହାରି ମଣିଷ ତ ପୁଣି ଜିତିବାର ଆଶାଧରି ଆଗେଇ ଚାଲିଚି । ଏବଂ ବହୁଥର ହାରିସାରି, ସେଇ ପରାଜୟଟାକୁ ଏକ ପ୍ରକାର ବିଜୟ ବୋଲି ଭାବି ନେଉଥିବା ମଣିଷ ବି ବେଳେବେଳେ ଖୁସି ହେଉଚି ।

ଏ ପୃଥିବୀ ଏକ ବିଚିତ୍ର ଚିଡ଼ିଆଖାନା । ଏଠି ସବୁ ଜୀବଙ୍କୁ ଚିହ୍ନି ହେବ ; କିନ୍ତୁ ମଣିଷଗୁଡ଼ାଙ୍କୁ ନୁହେଁ । କାହାର ଯେ କି ପ୍ରକାର ଭାବନା, କି ଉଦ୍ଦେଶ୍ୟ, କିଭଳିଆ ପ୍ରକୃତି, କେହି ଜାଣିପାରିବେ ନାହିଁ । ଜାଣିବାର ଅନ୍ୟ ଉପାୟ ବି ନାହିଁ ।

କିଏ ଜଣେ କହି ନଥିଲେ, ବିଂଶ ଶତକର ଦ୍ୱିତୀୟାର୍ଦ୍ଧରେ ମଣିଷ ସବୁଠାରୁ ବଡ଼ ହିଂସ୍ର, ବଡ଼ ଭୟାନକ, ବଡ଼ ସ୍ୱାର୍ଥପର । ଆତ୍ମକେନ୍ଦ୍ରିକତାର ବୀଜମନ୍ତ୍ର ଧରି ସେ ଆଗେଇ ଚାଲିଚି । ଅସମ୍ଭବ ବୋଲି ଗୋଟାଏ ଜିନିଷ ତା' ନିକଟରେ କିଛି ନାହିଁ । ନିଜ ଭିତରର ପଶୁକୁ ଖୁସି କରିବାପାଇଁ, ନିଜ ଅହଂକୁ ନିଜ କଫିନ୍ ସହିତ ନେଇଗଲା ପର୍ଯ୍ୟନ୍ତ, ସେ ଯେ କୌଣସି କାମ କରିପାରେ । ଧର୍ମର ଦୋହାଇ ଦେଇ,

ନାଚର ଆଲ ଦେଖାଇ, ବଂଶର ଆଟୋପ ମୂଷ୍ଟିକରି ଗୋଳିଆ ପରିବେଶ ତିଆରି କରେ ସେ । ସେଇଥିରେ ତ ତାର ସୁବିଧା ହାସଲ କରିବାର ସୁଯୋଗ ବେଶୀ ।

ଗୋଳିଆ ପରିସ୍ଥିତି ଯୋଗୁ ଆଜିକୁ ଅଠର ଦିନ ହେଲା ଏ ସହରରେ କର୍ଫ୍ୟୁ ଜାରି । ଏଇ ମଣିଷ ତିଆରି ଆବର୍ଜନା, ଧାର୍ମିକ ଅହଂ ସହିତ ବ୍ୟକ୍ତିକ ଅହଂର ସଂଘର୍ଷ ଲଗିଛି । ଏମିତିଆ ଗୋଟାଏ ଲେଖାଁ ପରିବେଶ ସୃଷ୍ଟିକରି କ'ଣ ପାଆନ୍ତି ଏ ମଣିଷ ! କେତେ ରକ୍ତପାତ, କେତେ ଗୃହଦାହ, କେତେ ଧର୍ଷଣ ଓ ଲୁଣ୍ଠନର ଇତିହାସ ସୃଷ୍ଟି ହେଇଗଲା ଏଇ ଦିନମାନଙ୍କରେ ।

ପ୍ରଥମ ଦିନମାନଙ୍କର କଥା—ସ୍ୱପ୍ନଭଳି ଲାଗେ··· , ମଣିଷ କ'ଣ କେବେ ମଣିଷ ସହିତ ଏଭଳି ବ୍ୟବହାର କରିପାରେ··· ?

ବାହାରେ ଭୀଷଣ ଗଣ୍ଡଗୋଳ ଓ ଚିତ୍କାର ଶୁଣି ଜଳାକବାଟି ବାଟେ ଘଟଣାଟିକୁ ଦେଖିବାକୁ ଚେଷ୍ଟା କରିଥିଲା ସେ । ମୋଡ଼ ପାଖର ଗୋଟାଏ ନିବୁଜ ଘରର କବାଟକୁ ଶକ୍ତ ହତିଆରମାନ ଧରି ଆଘାତ କରୁଥିଲେ ଦଳେ ଲୋକ ; ଉଲ୍ଲସିତ ହେଉଥିଲେ ଚିତ୍କାର କରୁଥିଲେ । ଶେଷରେ କବାଟ ଭୁଷୁଡ଼ିଗଲା ମାତ୍ରେ, ଘର ଭିତରୁ କ୍ଷୁଦ୍ର ହତିଆର ଧରି ଏମାନଙ୍କୁ ଆଘାତ କରିବାକୁ ପ୍ରସ୍ତୁତ ହୋଇ ଆଗେଇ ଆସୁଥିବା ଲୋକଟିକୁ ଆଖି ପିଛୁଳାକେ ଭିଡ଼ନେଇ······ଇସ୍ ! ସେଇ ସାମୂହିକ ଚିତ୍କାର ଭିତରେ ତା'ର ବିକଳ ଆର୍ତ୍ତନାଦ କୁଆଡ଼େ ମିଳାଇଗଲା । ରକ୍ତର ହୋରି ଖେଳ ପରେ ପରେ ଯେଉଁ ଦୃଶ୍ୟଟି ଦିଶିଗଲା, ତା' ଆହୁରି ଘୃଣ୍ୟ, ଆହୁରି ନାରକୀୟ ।

ପୁରୁଷଟିର ଆର୍ତ୍ତନାଦରେ ନିଜକୁ ସମ୍ଭାଳି ନପାରି ଘରଭିତରୁ କାନ୍ଦି କାନ୍ଦି ପଦାକୁ ଯେଉଁ ନାରୀ ଜଣକ ବାହାରି ଆସିଲା, ସେ ମନଖୋଲି କାନ୍ଦିବାକୁ ବି ସମୟଟିକ ସୁଯୋଗ ପାଇ ନ ଥିଲା । ମୃତ ପୁରୁଷଟି ଉପରେ ସେ କଚାଡ଼ି ହୋଇପଡ଼ିଲା ମାତ୍ରେ ( ହୁଏତ ତାକୁ ଠେଲି ଦିଆଯାଇଥିଲା ) ଆସୁରିକ ହସର ଫୁଆରା ଭିତରେ ତାକୁ ବିବସ୍ତ୍ର କରିଦିଆଗଲା । ହଠାତ୍ ସେଇମାନଙ୍କ ଭିତରୁ କେତେଟା ମଣିଷ ପଶୁ ହୋଇଗଲେ । ତାଙ୍କର ଦୁଇଗୋଡ଼ ଜାଗାରେ ହୋଇଗଲା ଚାରିଗୋଡ଼ । ଶରତ ଋତୁର କୁକୁରଙ୍କ ଭଳି ଗୋଟାଏ ଦେହ ଉପରେ ଏକାଧିକ ପଶୁ ଦେହିକ କ୍ଷୁଧା ନେଇ ଲେପ୍‌ଟେଇ ପଡ଼ିଲେ । ସେଦିନ ମଣିଷର ପଶୁ ରୂପକୁ ନିଜ ଆଖିରେହିଁ ସେ ଦେଖିଛି ।

ଦେଖିଛି, ଦୂରରେ ଜଳି ଉଠିଛି ଅସଂଖ୍ୟ ଗୃହ । ଗୁଡ଼ାଏ ରାକ୍ଷସ ମଣିଷଙ୍କୁ ଖୋଜିଖୋଜି ସେଇ ଜଳନ୍ତା ନିଆଁ ଭିତରକୁ ଫିଙ୍ଗି ଦେଇଛନ୍ତି ପରିତ୍ୟକ୍ତ ଅଳୋଡ଼ା କାଗଜଭଳି । ଇସ୍, ଏଇଠି ଏ ମଣିଷ ଜୀବନ କେତେ ଅନାବଶ୍ୟକ ସତେ ! କେତେ ଉଗ୍ର ଏ ରାକ୍ଷସମାନଙ୍କର ପ୍ରବୃତ୍ତି !

ସେଇଥିପାଇଁ ନିଶ୍ଚୟ, ସମୟର ଚକ ସ୍ଥିର ହୋଇଗଲା । ସବୁବେଳେ କେବଳ ରାତ—ଆଉ ରାତ । ଘରେ ଘରେ ମଣିଷ ବନ୍ଦୀ । ସଭ୍ୟତାର ଅସଭ୍ୟ ପରିଣତି ଯୋଗୁ ବାହାର ଆଜି ତା'ପାଇଁ ନିଷିଦ୍ଧ ଥିଲା । ବାହାରେ ବହୁ ଆରଣ୍ୟକ ହିଂସ୍ର ଜନ୍ତୁ । ଯେତେ ଖାଇଲେ ବି କ୍ଷୁଧା ମେଣ୍ଟୁ ନାହିଁ । ଲହ ଲହ ଜିଭକରି ସେମାନେ ବୁଲୁଛନ୍ତି, ଆହୁରି ଖାଇବେ···ଆହୁରି ।

ନଅଦିନ ପରେ ସନ୍ଧ୍ୟାରେ ଦୁ' ଘଣ୍ଟାପାଇଁ କର୍ଫ୍ୟୁ କୋହଳ ହେଲା । କର୍ଫ୍ୟୁ କୋହଳ ନ ହେଇ ଆଉ ଯଦି ନଅଘଣ୍ଟା ରହିଥାନ୍ତା, ବୋଧହୁଏ ସିଏ ପାଗଳ ହେଇ ଯାଇଥାନ୍ତା । ଭୋକ ଉପାସରେ ବହୁଲୋକ ମରିଯାଇ ଥାଆନ୍ତେ । ଅବରୁଦ୍ଧ କୋଠରୀରେ ନଅଦିନ ବନ୍ଦୀହୋଇ ରହିବାର ସେ ଯେ କି ଅନୁଭୂତି, କେବଳ ଅନୁଭବୀ ହିଁ ତାହା କହିପାରିବ ।

ହଠାତ୍ ମୃତ ସହର ବଞ୍ଚି ଉଠିଲା ଦୁଇଘଣ୍ଟାପାଇଁ । ସତେରେ, ଏ ସହର ମରିଥିଲା ନିଶ୍ଚୟ । କି ଦିନ, କି ରାତ, ଘରଭିତରୁ କଅଁଳା ଛୁଆଟାର କାନ୍ଦଣା ବି ଶୁଭୁ ନଥିଲା । ଏବେ ସମସ୍ତେ ଛକାପଞ୍ଝାହୋଇ ବାହାରିଥିଲେ ବଞ୍ଚିବାର ଉପାଦାନ ସଂଗ୍ରହ କରିବାପାଇଁ । ତାହା ପୁଣି ମିଳୁଚି ବା କୋଉଠୁ । ସିଏ ବା ଅଳ୍ପ ଦୋକାନ ଖୋଲି କିଛି ଜିନିଷ ଦଉଚି, ସେ ନଉଚି ଖୁବ୍ ଚଢ଼ା ପଇସା । ମରଣର ଆଁ ଭିତରେ କି ଚମତ୍କାର ପିକ୍‌ନିକ୍ !

ନଅଦିନର ବନ୍ଦୀ ଜୀବନ ପରେ ସେ ଓହ୍ଲାଇ ଆସିଲା ରାସ୍ତାକୁ । ନା, ସେ ପାଗଳ ହୋଇନାହିଁ କିନ୍ତୁ ଆଉ କେତେ ଘଣ୍ଟା ରହିଥିଲେ ନିଶ୍ଚେ ପାଗଳ ହେଇ ଯାଇଥାନ୍ତା । ଇଏ ଗୋଟା କ'ଣ ଜୀବନ ' ଭୟ ଓ ଶଙ୍କାକୁ ପାଚେରୀ କରି କେହି କେବେ କ'ଣ ଘରକରି ରହି ପାରିଲାଣି !

ରାସ୍ତାରେ ଏକୁଟିଆ ଛୁଟିଥିଲା ସେ ତା'ର ସ୍ବପ୍ନର ମନ୍ଦିର ଆଡ଼କୁ । ସହରର ଶେଷଭାଗରେ ବହି ଯାଉଥିବା ନଈ ଏବଂ ସେଇ ନଈକୂଳରେ ଥିବା ପ୍ରାଚୀନ ମନ୍ଦିଆର ପାଦଦେଶରେ ପୁରୁଣା ଖାନ୍‌ଦାନୀକୁ ଜାବୁଡ଼ିଧରି ଜରାଜୀର୍ଣ୍ଣ ହୋଇ ଯାଇଥିବା ଘରଟି ପାଖକୁ । ସେ ଘରେ କିଏ କିଏ ଆଉ ରହନ୍ତି, ସେ ଜାଣେ ନା । କିନ୍ତୁ ସେ କେବଳ ଜଣକୁ ଜାଣେ···ଜଣକୁ ।

ଏମିତି କି, ସେ ଜଣଙ୍କର ନାଁ ବି ସେ ଜାଣେନା । ଏଇ ସହରକୁ ଟ୍ରେନିଂରେ ଆସିବା ପରେ ଆକସ୍ମିକ ନଈକୂଳ ବୁଲା, ସନ୍ଧ୍ୟାରେ ଅବସର ବିନୋଦନପାଇଁ ଅନେକ ଥର ସେ ଜାଗାକୁ ଯିବା ଏବଂ ପୋଷା ହରିଣଛୁଆଟିକୁ ଧରି ଏକାକିନୀ ସିଏ ତା' ଘର ସାମନା ବଗିଚାରେ ବୁଲୁଥିବାବେଳେ ଦେଖା ସାକ୍ଷାତ ଏବଂ ଶେଷରେ

ବାରମ୍ବାର ସେଇ ସମୟରେ ଦେଖାସାକ୍ଷାତ ପରେ କିଛି ଘୋଟା ମୋହ-ଆକର୍ଷଣଜନିତ ହସ ବିନିମୟ ; ବାସ୍ --ବାସ୍, ଏତିକି । ସେ'ଠାରୁ ଅଧିକ କିଛି ନୁହେଁ । ମାତ୍ର ସେଇ ଘଟଣା ତ ଏକ ରୁଟିନ୍ ହୋଇଗଲା ତା' ଜୀବନର ।

ନିଅ ଦିନର ଅବରୁଦ୍ଧ ଜୀବନ ପ୍ରବାହକୁ ଧରି ସେ ରାସ୍ତାକୁ ଚାଲି ଆସିଥିଲା । ସେ ଆସିଥିଲା ବଞ୍ଚିବାର ଉପାଦାନ ସଂଗ୍ରହ କରିବାକୁ ନୁହେଁ, ତା'ର ନିତ୍ୟ-ନୈମିତ୍ତିକ ରୁଟିନ୍‌ବନ୍ଧା କାମ ପୂର୍ତ୍ତି କରିବା ନିମିତ୍ତ । ତେବେ ସିଏ ତା'ପାଇଁ ଥିଲା ବଞ୍ଚିବାର ଉପାଦାନ; ଏକଥାକୁ ଭୁଲ୍ ବୋଲି କେହି କହିପାରିବେ ନାହିଁ । ଦୁଇଘଣ୍ଟା ଭିତରେ ତାକୁ ସହରର ଶେଷ ମୁଣ୍ଡକୁ ଯାଇ ପୁଣି ଫେରିବାକୁ ହେବ । ନିଅଦିନର ଅପୂର୍ଣ୍ଣାଙ୍ଗ କାମକୁ ପୂର୍ଣ୍ଣ କରିବାକୁ ହେବ । ରାସ୍ତାରେ କ୍ଷିପ୍ର ପଦରେ ଚାଲିଥିଲା ସେ ।

ରାସ୍ତାରେ ଅନେକ ସନ୍ଦେହୀ ମଣିଷ ; ଚାଲିଥିଲେ ମୂଷା ଭଳି । ଚୁନ୍‌ଚୁନ୍ ବି ହେଉଥିଲେ । ଜଣେ ଆଉ ଜଣକୁ ସନ୍ଦେହରେ ଚାହୁଁଥିଲା । ସମସ୍ତେ ଥିଲେ ଚଞ୍ଚଳ, ବ୍ୟଗ୍ର । ମୋଟ ଉପରେ ସେ ରାସ୍ତାରେ ଏମିତିଆ ମଣିଷମାନଙ୍କୁ ଦେଖୁଥିଲା, ଯେଉଁଭଳି ମଣିଷଙ୍କୁ ସେ ଆଗରୁ କେବେ ଦେଖି ନଥିଲା । ସତେ ଯେମିତି ଏମାନେ କେହି କେବେ ଏ ସହରରେ ନଥିଲେ । ଏବେ ଆସିଛନ୍ତି ; ସବୁକିଛିକୁ ସେମାନେ ଚହଲୁଛନ୍ତି, ଜାଣୁଛନ୍ତି । ସବୁଠି ଅଚହ୍ନା ଭୟର ବିରୁଡ଼ି ବସା । ତେଣୁ ହିଁ ତ ସନ୍ଦେହ ।

ଠାଏ ଠାଏ ରାସ୍ତାର ଛକମାନଙ୍କରେ ବନ୍ଧୁକଧାରୀ ପୋଲିସଙ୍କ ମେଳଣ । ସବୁଠି ଭୟ ଥିଲା, କେବଳ ଭୟ ନଥିଲା ସେମାନଙ୍କ ପାଖରେ । ସେମାନେ ବେପରୁଆ । ତାଙ୍କ ଭିତରୁ ଦଳେ ବସି ତାସ୍ ଖେଳୁଥିଲେ । ସମସ୍ତଙ୍କ ପାଖରେ ଗୁଳିଭରା ବନ୍ଧୁକ । ଭୟ କରିବେ କାହାକୁ ? ଲୋକମାନେ ନିର୍ବାଚନବେଳେ ବାକ୍‌ସରେ ଯେଉଁ ଭୋଟ କାଗଜ ଗଳାନ୍ତି ସେଗୁଡ଼ାକ ଗୁଳିହୋଇ ଏମାନଙ୍କ ହାତକୁ ଫେରିଆସେ ।

କିଏ ଜଣେ କହୁଥିବା ସେ ଶୁଣିଲା, ଏଇ ପୋଲିସମାନେ କୁଆଡ଼େ ଘଟଣାଟାକୁ ଉସ୍‌କେଇ ଦେଲେ । ତାଆଶୀ ହେଇ ଲଗିଲେ, ଏବେ ଗୁଣିଆ ହେଇ ଝାଡ଼ୁଥାନ୍ତି । ବିଚିତ୍ର ଏମାନଙ୍କର କାମ/ରୂପ । କଥାଟା ସତ ହେଇ ଥାଇପାରେ, ନ ହେଇ ଥାଇପାରେ । କିଏ କହିବ ; ସେମାନେ ବି ମଣିଷ ।

ତା'ର କିନ୍ତୁ ବାଧା ନଥିଲା ସେ ଆଡ଼କୁ । ସେ ଶୁଣୁଥିଲା, ଦେଖୁଥିଲା ଏବଂ ଆଗେଇଥିଲା ଆଗକୁ । ନଈକୂଳ ସେଇ ମୁଣ୍ଡିଆ ପାଖର ତା' ପରିଚିତ ଘରର

ବଗିଗୁ ନିକଟରେ ପହଞ୍ଚିଲା ବେଳକୁ ଅନ୍ଧାର ହେବାକୁ ଆହୁରି କିଛି ସମୟ ବାକି ଥିଲା । ସେ ଗୁହିଁ ଦେଖିଲା ସାଗ୍ର ବଗିଗ୍ଛଟା ନିର୍ଜୁଟିଆ । ସାହସକରି ଘରର ଫାଟକ ଟପି ସେଦିନ ସେ ପ୍ରଥମଥରପାଇଁ ସଦର ଦରଜା ନିକଟକୁ ଯାଇଥିଲା ।

କବାଟ ଭିତରପଟୁ ବନ୍ଦ ଥିଲା । ପରିବେଶଟା କିହାତ ନିର୍ଜନ ମନେ ହେଉଥିଲା— ନଈକୂଳର ନିର୍ଜନତାଠାରୁ ଆହୁରି ନିର୍ଜନ । ଘର ଭିତରୁ ବେଳେବେଳେ ଶୁଭୁଥିଲା କୁଲୁଡ଼ାର ଗୁମୁରିବା ଶବ୍ଦ । ସତେ ଯେମିତି ସେ ସବୁ ଗୁମର କଥା ଜାଣେ, କହିଦେବାକୁ ଧମକଉଚି । କାହାକୁ କ'ଣ କହିବ କେଜାଣି ।

କିନ୍ତୁ ହରିଣ ଛୁଆଟି କାହିଁ ?

ତା'ର ତ ଯୋର-ଶବ୍ଦ ନାହିଁ ।

ଆଉ ସେ······

ଆଉ ସାହସ ହେଲାନି ତା'ର । ଗୋଟାଏ ଲମ୍ବା ନିଶ୍ୱାସ ଗ୍ରାଡ଼ି ସେ ଫେରି ଆସିଲା ସେଦିନ । ବାହୁଡ଼ିବା ବେଳେ ତା' ମନକୁ ଭୟ ଡ଼ିଆଁ ମାରି ଅକ୍ତିଆର କରି ନେଇଥିଲା । ସେ ଏକପ୍ରକାର ଅଣନିଶ୍ୱାସୀହୋଇ ଦୌଡ଼ିଥିଲା । ଦୌଡ଼ିଚି ତ ଦୌଡ଼ିଚି । କେତେ ସମୟରେ କେଉଁ ମୋଡ଼ଦେଇ ସେ ଆସି ତା' ରହିବା ଜାଗାରେ ପହଞ୍ଚିଲା, ସେ ଜାଣେନା । ପହଞ୍ଚିବା ପରେ ସେ ନିଜକୁ ତର୍ଜମା କଲା ଯେ, ଗଲାବେଳେ ବୋଧହୁଏ ତାକୁ ଭୂତ ଲାଗିଥିଲା ।

ପରଦିନ ପୁଣି ସେଇ ସମୟକୁ ତାକୁ ଭୂତ ଲାଗିଲା ଏବଂ ସେ ପୁଣି ଗଲା ସେଇ ନଈକୂଳ ମୁଣ୍ଡିଆ ପାଦଦେଶର ଘର ପାଖକୁ । ଏଥର କିନ୍ତୁ ଅଧିକ ସାହସ ସଞ୍ଚୟକରି ସେଠିକୁ ଯାଇଥିବାରୁ କବାଟରେ କରାଘାତ କଲା ଓ କଣ୍ଠରେ ଯେତେ ନରମ ସଭ୍ୟମତା ସୃଷ୍ଟି କରାଯାଇପାରେ, ତାହା ସୃଷ୍ଟିକରି ଜଣାଇ ଦେବାକୁ ଚାହିଁଲା ଯେ 'ସେ ଆସିଚି' । ସେସବୁ ବିଫଳ ହେବାରୁ ଅଗତ୍ୟା ସେ ଫେରିଆସିଲା ପୂର୍ବଦିନ ପଚ୍ଛାଚ ପୁନରାବୃତ୍ତିକରି ।

ତା' ପରଦିନ ସେହି କର୍ଫ୍ୟୁ ଉଠା ସମୟ ଆସିବା ପର୍ଯ୍ୟନ୍ତ ସେ ତା' କୋଠରୀରେ ଅନେକ ଉପାୟ ଚିନ୍ତା କଲା ; ମାତ୍ର କିଛି ପରିଣତିରେ ପହଞ୍ଚି ନପାରିବାରୁ ଯଥା ସମୟରେ ପୁଣି ଗଲା ସେଇ ପରିଚିତ ଘର ପାଖକୁ ।

ଏଥର ଅଧିକ ସାହସ ସଞ୍ଚୟକରି ଆଣିଥିଲା ସେ । ତେଣୁ ସେ ଦୀର୍ଘ ସମୟ କବାଟର ଆଘାତ କଲା ଏବଂ ତତ୍ପରେ ସ୍ପଷ୍ଟ ସ୍ୱର ଶୁଣାଇ କହିଲା,······'ମୁଁ ଆସିଚି, ମୁଁ······ମୁଁ ପୋଲିସ ନୁହେଁ, କିମ୍ବା ନରରକ୍ତରେ ଉନ୍ମତ୍ତହୋଇ ନାଚୁଥିବା ପିଶାଚ

ନୁହେଁ । ମୁଁ·····ଯିଏ ପ୍ରତିଦିନ ସନ୍ଧ୍ୟାରେ ଆସେ ଏବଂ ଦେଖାହୁଏ ।' ଏତିକି ଏକା ନିଶ୍ୱାସରେ କହିସାରି ସେ ଘର ଭିତରୁ କିଛି ଶବ୍ଦ, କିଛି ମିଠା ସ୍ୱରର ପ୍ରତିଧ୍ୱନି ଶୁଣିବାପାଇଁ ଆଶା ରଖି କାନ ପାତିଲା ।

ନାଃ, ଏଥରକି କୁକୁଡାର ଶବ୍ଦ ବି ନାହିଁ । କିନ୍ତୁ ହରିଣ ଛୁଆର କୁହାଣ ମିଶା ଧ୍ୱନି ସେ ଶୁଣିଲା ଏଠି ପ୍ରଥମଥରପାଇଁ । ସେ ସ୍ଥିର କରିନେଲା—ଏ ଘର ଭିତରେ ନିଶ୍ଚେ ସମସ୍ତେ ଅଛନ୍ତି ; ମାତ୍ର କେହି ତା' କଥା ଶୁଣୁ ନାହାନ୍ତି ଭୟରେ । ହାତରେ ଆଉ ସମୟ ନାହିଁ ଫେରିଯିବାକୁ ହେବ । ବ୍ୟସ୍ତତା ତା' ମନରେ କଅଁ ଳିଆ ଇଲିକାକୁ ଘୁଉଁକିନା ପୋଡ଼ିଦେବାରୁ ସେ କହି ଉଠିଲା,···'ହଉ···,ତାକୁ କହିଦିବ, ମୁଁ ଆସିଥିଲି । ଫେରିଯାଉଚି'—

ଏଇ ଘଟଣା ଘଟିବାର ପରଦିନଠୁଁ ସେ ଆଉ ନଈକୂଳ ମୁଣ୍ଡିଆ ପାଖର ସେହି ଘର ନିକଟକୁ ଯାଇପାରି ନାହିଁ । ପୁଣି କୋଉଠି ଗଣ୍ଡଗୋଳ ବଢ଼ିଯିବାରୁ କର୍ଫ୍ୟୁ ବଳବତ୍ତର ହୋଇଗଲା ଦିନରାତିପାଇଁ । କୋହଲ ପୁଣି କଠିନ ହେଲା । ଏମିତି ଏମିତି ଅଠର ଦିନ ହୋଇଗଲାଣି । ମହାଭାରତର ଗୋଳଯୁଦ୍ଧ ତଥାପି ସରି ନାହିଁ । କର୍ଫ୍ୟୁ ଆଉ କୋହଲ ହୋଇନାହିଁ, କିମ୍ବା ସେ ଆଉ ତା'ର ପରିଚିତ ପରିବେଶ ଭିତରକୁ ଯାଇପାରି ନାହିଁ । ପଛରେ ରହିଗଲାଣି ଅଠରଟି ଦିନ ଓ ରାତିର ଗୁମ୍ଫିତ ଇତିହାସ । ବଞ୍ଚି ରହିବାର ସବୁନିମ୍ନ ପ୍ରବାହ ଏଠି ଯେମିତି ଅବରୁଦ୍ଧ । କ'ଣ ଅବା କରାଯାଇ ପାରିବ ଏଭଳି ଅବସ୍ଥାରେ ।

ବାରମ୍ବାର ଠିଆହୋଇ ଏବଂ ବସି ବସି ଭାବୁଥିଲା ସେ । ଭରା ଭେଦୁଅର ଫିକା-ମେଘଙ୍କ ପଲଟଣ ଭଳି ରୁହାକୁ ରୁହା ହାଇ ମାଡ଼ି ଆସୁଥିଲେ ତା' ପାଖକୁ । ରାତି କେତେ ହେବ କେଜାଣି ? ବାହାରେ ନିର୍ଜନତା ମୃତ ସହରର ଇତିକଥା କହୁଥିଲା ।

ଦୃଷ୍ଟି ଶୂନ୍ୟ ଆଡ଼କୁ ପହଁରାଇଲା ସେ । ଉପରେ ତାରାଭରା ଆକାଶ । ମନରେ ଭାବନାର ଭେଳିବାଜି । କ'ଣ ଦରକାର ଥିଲା ମଣିଷ ଜୀବନପାଇଁ ଏ ଅନାକାଂକ୍ଷିତ ଶୃଙ୍ଖଳା ' କେବଳ କର୍ଫ୍ୟୁ କ'ଣ ସ୍ୱାଭାବିକ ଜୀବନଧାରା ଫେରାଇ ଆଣିବ ? ତାହା ଯଦି ସତ୍ୟ, ତେବେ ଫେରାଇ ଆଣି ପାରୁନି କାହିଁକି ? କାହିଁକି ହେଉଚି ସେ କର୍ଫ୍ୟୁର ପୁନରାବୃତ୍ତି ?

କିଛି ଉତ୍ତର ଖୋଜି ପାଉ ନଥିଲା ସେ ।

ଅଦୂରର ଇଉକାଲିପଟସ୍ ଗଛର ପତ୍ର ଉପରେ ଚକ୍ ଚକ୍ କରୁଥିବା ଆଲୁଅ ତାକୁ ଯେମିତି ଖତେଇ ହେଉଥିଲା । ବାହାରେ ଏତେ ଆଲୁଅ ଥାଇ ବି ସତେ

ଯେମିତି କମା ଆଲୁଅ ନଥିଲା । ସୀମାହୀନ ଅନ୍ଧାର ଜମାଟ ବାନ୍ଧି ରହିଥିଲା ମନରେ । ହୃଦୟର ପଟୁଆର ଭିତରେ ତା'ର ବାରମ୍ବାର ମନେ ପଡ଼ି ଯାଉଥିଲା ସେଇ ପରିଚିତ ହସଫୁଟା ମୁହଁଟା, ନାଁ-ନଜଣା ସୁନ୍ଦର ସୁଗଠିତ ଚେହେରାଟା ।

ଆଃ, କେମିତି ସେ କହିଦେଇ ପାରନ୍ତା କି, ତାକୁ ସେ ପ୍ରତିଦିନ ଅନ୍ତତଃ ଥରେ ଦେଖିବାକୁ ଚାହେଁ । ଜୀବନରେ କୌଣସି ଗୋଟାଏ ମୁହୂର୍ତ୍ତିକୁ ନିଷ୍ଠାପର ଭାବେ ବିନିଯୋଗ କରିବାକୁ ଚାହେଁ ସେ । ମାତ୍ରନିୟମ ଅନୁସାରେ ଇଏ ପ୍ରେମ ନ ହୋଇପାରେ ; କିନ୍ତୁ ସେଇଭଳି ଆଉ ଗୋଟାଏ କିଛି ନିଶ୍ଚୟ । ପ୍ରେମ ତ ଏମିତି ହୁଏନା । କେଜାଣି ହଉଥିବ ଯଦି···

ଜୀବନପାଇଁ କିଛି ଗୋଟାଏ ଅବଲମ୍ବନ ଦରକାର । ବିନା ଅବଲମ୍ବନରେ ମଣିଷ ଏ ବିରାଟ ନିଃସଙ୍ଗ ପୃଥିବୀରେ ଦଣ୍ଡେ ଚଳି ପାରିବ ନାହିଁ । ଧର୍ମରେ ହେଉ, କର୍ମରେ ହେଉ, କିମ୍ବା ପ୍ରେମରେ ହେଉ ବା 'ମିଛ'ରେ ହେଉ,—କିଛି ଗୋଟାକୁ ଜାବୁଡ଼ି ଧରିବା ଦରକାର । ଧର୍ମ-କର୍ମ-ପ୍ରେମ ଅପେକ୍ଷା ମିଛକୁ ଆଶ୍ରୟକରି ଏ ସଂସାରର ବହୁ ଲୋକ ଚଳିଯାଆନ୍ତି ।

ସେ କେମିତି ତାକୁ କହିବ, ଏତେ ବଡ଼ ସହରଟାରେ ଗୋଟାଏ ନିଃସଙ୍ଗ ଏକଲା ମଣିଷଟିଏ ତାକୁ ବଞ୍ଚି ରହିବାର ଅବଲମ୍ବନ କରିନେଇଚି ବୋଲି । ପୁଣି ଏକଥା କେମିତି ସମ୍ଭବ ହେବ, ଦୀର୍ଘ ଅଠର ଦିନ କାଳ ତାକୁ ନଦେଖି ସେ କେମିତି ନିଜକୁ ଚଳେଇ ନେବ !' ଇଏ ତା'ର ଗୃହିଟିନ୍‌ବନ୍ଧା ଜୀବନର ଅଠରଟି ଆବେଗମୟ ମୁହୂର୍ତ୍ତିର ସମାହାର । ତାକୁ ହରେଇ ବନ୍ଦୀ ଭଳି ଏ ରୁଦ୍ଧ କୋଠରୀରେ ସେ ରହିପାରିବ କେମିତି !!

ବହୁ ଆଗରୁ ତା'ର ପାଗଳ ହୋଇଯିବା ଉଚିତ ଥିଲା । ମଣିଷମାନେ ଏଇଭଳି ଅବସ୍ଥାରେ ନିଶ୍ଚୟ ପାଗଳ ହେଉଥିବେ । ଏମିତି ପଶୁ ଖୁଆଡ଼ରେ ବଞ୍ଚି ରହିବାକୁ ଜୀବନ କୁହାଯାଏ ନାହିଁ । ତାହା ଆଉ କିଛି ନିଶ୍ଚୟ । ଭାବୁଥିଲା ସେ—ସେ ଏକ ସର୍ବନାମ ; ଅଗଣିତ ଶୃଙ୍ଖଳିତ ନିରୀହ ମାନବାତ୍ମାର ପ୍ରତିନିଧି ।

କେମିତି ବଞ୍ଚି ରହିହେବ ସତେ ଏଭଳି ପରିସ୍ଥିତିରେ ! ଆକାଶରେ ଆଖି ପହଁରେଇ ଦେଖିଲା, ଅସଂଖ୍ୟ ତାରକା ତାକୁ ଚାହିଁ ହସୁଛନ୍ତି ଆଖିମିଟିକା ମାରି । ସେ ଝରକାକୁ ଭଲଭାବେ ଖୋଲିଦେଲା ଏବଂ ତା'ପରେ କବାଟକୁ ବି । ବାହାରେ ଶୋଇଲା ସହର ଏବଂ ଅସଂଖ୍ୟ ତାରା-ଖଞ୍ଜା ହୋଇଥିବା ଆକାଶ । ଭାରି ଇଚ୍ଛା ହେଲା ତା'ର ସେଇ ମୁହୂର୍ତ୍ତିରେ ନଈକୂଳ ତୁଣ୍ଡିଆ ପାଖକୁ ଯିବାକୁ—ତାରକିତ ଆକାଶ ଦେଖିବାକୁ ଏବଂ ସେଇ ପ୍ରେମମୟୀ ମୂର୍ତ୍ତିକୁ ସାକ୍ଷାତ କରିବାକୁ ।

ସେ ତା'ର ମନର ସମସ୍ତ ଝରକା ଖୋଲିଦେଲା । ଭୟର ବିକଟାଳ ମୁଖା ଟାକୁ ସେଇ କୋଠଘରର କୋଉ କଣକୁ ଫିଙ୍ଗିଦେଲା ଯେ, ତାହା ତଳେ ପଡ଼ି ଚୂନା ଚୂନା ହୋଇଗଲା । ଆବେଗର ଝରଣାଟି ଭଳି ସେ ମାଡ଼ି ଚାଲିଲା ରାସ୍ତା ଉପରକୁ । ରାସ୍ତାରେ ପରସ୍ପରକୁ ସନ୍ଦେହ କରୁଥିବା ତଥାକଥିତ ମଣିଷମାନେ ନଥିଲେ, କମ୍ବା ପାଶବ ପ୍ରବୃତ୍ତି ନେଇ ଦଉଡ଼ୁଥିବା ଭୟଙ୍କର ଜନ୍ତୁଗୁଡ଼ାକ ବୁଲୁ ନଥିଲେ । ମୋଟ ଉପରେ ସେ ନଈକୂଳରେ ପହଞ୍ଚିଲା ପର୍ଯ୍ୟନ୍ତ ଆଉ କାହାକୁ ଦେଖି ନଥିଲା, ଯେଉଁମାନେ କି ତାକୁ ସନ୍ଦେହ କରିଥାନ୍ତେ ; କମ୍ବା ଆଇନ୍ ନାଁରେ ଅବାନ୍ତର କଥାଗୁଡ଼ା ପଚାରିଥାଆନ୍ତେ । ତା'ର ପରିଚିତ ଘରର ସଦର ଦରଜା ପାଖରେ ପହଞ୍ଚିଲାବେଳକୁ ଅକସ୍ମାତ୍ ତା' ପାଟିରୁ ମେ·ାଏ ଶବ୍ଦ ହାବୁକାମାରି ଖସିଗଲେ—'ମାର ଗୋଲି ହୋ ଏ କର୍ଫ୍ୟୁକୁ'—

ମାତ୍ର ପର ମୁହୂର୍ତ୍ତରେ ତାର ମୁହଁରୁ ଖସି ଯାଇଥିବା ଶବ୍ଦମାନେ ଆଉ କାହାର କଥାଭଳି ମନେ ହେଲେ । ଏବଂ ଏଭଳି ପ୍ରତେ ହେଲା ଯେ, ତାହା ଯେମିତି ସେ ଏଠିକି ଆସିବା ବାଟରେ ଅନୁଭୂତିରେ ସାଉଁଟି ଆଣିଥିବା କୌଣସି କୌଣସି ପରିଚିତ ଶବ୍ଦ ।

ଆସିବାବେଳେ ବାଟରେ ସେ କ'ଣ ଅବା ଦେଖିଥିଲା ଅଧିକ ଓ—ହଁ, ଏଇ ଗଣ୍ଡଗୋଳରେ ପୋଡ଼ି ପାଉଁଶ ଗଦାରେ ପରିଣତ ହୋଇଥିବା ଗୃହସ୍ଥର ଘର ସାମ୍ନାରେ, ତା' ଅନୁପସ୍ଥିତିରେ ଶୋଇରହି କୁଁ—କୁଁ ହେଉଥିବା କୁକୁରର ଶବ୍ଦ । ନୀରବତା ଭିତରେ ସେଇ ଶବ୍ଦଟି ଥିଲା ସବୁଠୁଁ ସ୍ମରଣୀୟ ; ସବୁଠୁଁ ମନେ ରହିଲା ଭଳି ଘଟଣା ।

'ମାର ଗୋଲି ହୋ ସେ ଘଟଣାକୁ'—

• ପୁଣି ଥରେ ତା'ର ପାଟି ଖୋଲିଥିଲା ଏବଂ ସେ ଏକରକମ ଦକ୍‌ଦାର ହେଲାଭଳି ଏ କଥାମାନ କହିଥିଲା । ମାତ୍ର ଆଖି ଆଗରେ ସେଇ ଘରଟିର ସଦର ଦରଜା ମୁକୁଳାଥିବା ଦେଖି ସେ ଚମକି ପଡ଼ିଲା । ଅଟକିଗଲା ତା'ର ପାଦ ଏକ ଅଜଣା ସମ୍ଭାବ୍ୟ ବିପଦ ଆଶଙ୍କାରେ । ଚାରିଆଡ଼ ମୁକୁଳା । ସନ୍ ସନ୍ ନିର୍ଜନତା । ଘରେ ବାହାରେ ଅନ୍ଧାର ତା'ର ପିଲାଛୁଆ ଧରି ନୀରବତା ସହିତ ଖେଳୁଚି ।

ସେ ଏଥର ଡିଆଁ ମାରିଲା ଭଳି ଘର ଭିତରକୁ ପଶିଗଲା; ଝଡ଼ ଭଳି ଘୂରିଗଲା ଚାରିଆଡ଼େ । ଅନେକ ଥର ଝୁଣ୍ଟିଲା, ରକ୍ତାକ୍ତ ହେଲା । କେହି କୁଆଡ଼େ ନାହିଁ । ଘର ଭିତରେ ଘର, ତା' ଭିତରେ ଘର । ସବୁ ଖୋଜିଲା ଏବଂ ଶେଷରେ ନିଜର ସମସ୍ତ ଶକ୍ତି ସଞ୍ଚୟକରି ଚିତ୍କାର କଲା—"ନିଏ କୋଉଠି ଅଛ,

ଶୁଣ······ତାକୁ କହିଦେବ—ମୁଁ ଆସିଥିଲି······ବାରମ୍ବାର ଆସି ଫେରିଚି··· କେତେ ଅସୁବିଧା ଭିତରେ ଆସିଚି । ଆଉ ଆସି ପାରିବି କି ନା ସନ୍ଦେହ······"

ସେମିତି ଚିତ୍କାର କରି କରି ସେ ବାହାର ବଗିଚା ପାଖରେ ଆସି ପହଞ୍ଚିଲା ବେଳେ, ଚିତ୍କାର ତା'ର ଅଧାରେ ଅଟକିଗଲା । ହେଇତ, ହରିଣ ଛୁଆଟା ବଗିଚାରେ ଦୌଡ଼ୁଛି··· ତାକୁ ଧରିବାପାଇଁ ଲାଳାୟିତ ଭଙ୍ଗୀରେ ଧାଇଁଚି ସେହି ଶୁଭ୍ର ବସ୍ତ୍ର ପରିହିତା ତରୁଣୀ······

ଇଏତ ଆଉ ସ୍ୱପ୍ନ ନୁହେଁ······ତେବେ କାହିଁକି ତାକୁ ଏମିତି ଠକି ଗଲଚି ସେ । ସେ ଧାଇଁଚି, ହରିଣ ଛୁଆ ଧାଇଁଚି, କିନ୍ତୁ କିଛି ଶବ୍ଦ ତାକୁ ଶୁଭୁନି କାହିଁକି ?···ନା-ନା-ନା······ମିଛ···

ନଈକୂଳର ନିର୍ଜନ ପରିବେଶରେ ତା'ର ଚିତ୍କାର ପ୍ରତିଧ୍ୱନି ତୋଳି ମିଳେଇଯିବା ପୂର୍ବରୁ ତା' ମୁହଁରେ ଆସି ପଡ଼ିଥିଲା ପୋଲିସ ଗାଡ଼ିର ଆଲୁଅ । ତା'ର ଭିତରେ ସେ ଜଳକାହୋଇ ଖୋଜୁଥିଲା ଶୂନ୍ୟ ବଗିଚାକୁ । ତାହା ଯେମିତି ଖେଙ୍କାର ହୋଇ କହୁଥିଲା,—କେହି ନାହିଁ······କେଇ ନାହିଁ······



# ମେଲୋଡ଼ି ହାଉସ୍

ଆଜି ଏକଥା ଲେଖିଲାବେଳକୁ ମୋର କେବଳ ତାଆର କଥା ବେଶି ମନେ ପଡ଼ୁଛି । ଲୋକଟାର ଅନେକଗୁଡ଼ିଏ ଭାବ ବିରୋଧାଭାସ ସୃଷ୍ଟି କରୁଥିଲା ଗ୍ରାହକର ମନରେ, ଦର୍ଶକର ଚିନ୍ତା-ଚେତନାରେ ଏବଂ ସର୍ବୋପରି ତାଆର କଥା ଓ କାମରେ । ଇନ୍ଦ୍ରକାଲପଟ୍ଟିସ ଗଛ ଭଳି ଗମ୍ଭୀର ମୁହଁ, ଅଶ୍ୱତ୍ଥ ପତ୍ର ଭଳି ଅସ୍ଥିର ସ୍ୱର ଓ ତଦ୍‌ଗତ ଭାବ-ବିଭୋର ବୈଷ୍ଣବ ଭଳି ତନ୍ମୟ ମଣିଷଟିଏ ।

ହଁ, ସେଇ ଫୋଟାମିଆଁ

ଯାହା କଥା ମୁଁ ଆପଣମାନଙ୍କୁ କହିବାକୁ ଯାଉଛି ।

ଆଜି ବି ସେ ହୁଏତ ଇଦ୍‌ର ଚାନ୍ଦକୁ ଚାହିଁଥିବ······;ଆଉ ଭାବୁଥିବ ତା'ର ନଟାଳିଆ ଜୀବନର ଅଲଗା ସୁତାଖିଅ କଥା । ନ ଥିଲା ଜନକପୁର ସ୍ଟୁଡିଓ ତା' ଆଗରେ ବସ୍ଟୁଡର ବୁଢ଼ୀଆଣି ଜାଲ ସାଜି ଜାଲୁରୁ ଜାଲୁରୁ ହେଇ ଯାଉଥିବ ।

ସେ ଗୋଟାଏ 'ମେଲୋଡ଼ି ହାଉସ୍' କରିଥିଲା—ଠିକ୍ ଆମ ସହରର ଶେଷ ଭାଗକୁ, ଯୋଉଠି ମ୍ୟୁନିସିପାଲିଟିର ପିଚୁଦିଆ ରାସ୍ତା ଓ ଇଲେକ୍‌ଟ୍ରି ବତୀ ଖୁଣ୍ଟଗୁଡ଼ା ସରିଯାଇ, ଆରମ୍ଭ ହୋଇଛି ବାବୁଲ୍ ଗଛର ଜଙ୍ଗଲ ଓ କିରିସିନି ବତୀଜଳା ବେଙ୍କୁବ୍ ମଣିଷାକୃତ ଖୁଣ୍ଟଗୁଡ଼ା—ସେଇଠି;—ସେଇଠି ତା' ଦୋକାନ ।

ଅନ୍ୟ ପଟୁ ଦେଖିଲେ ପାହାଡ଼ର ଘାଟିରାସ୍ତାଟି କେତେ ଉଠୁ-ପଡ଼ ହେଇ, ଆଖି ନାକ ବଙ୍କାକରି, ନେହୁରା-ନମନ୍ତ ହେଇ, ଯୋଉଠି ସହରର ସମତଳ ଜାଗା ସହିତ ହାତ ମିଳେଇଛି, ସେଇଠି ଫୋଟାମିଆଁର 'ମେଲୋଡ଼ି ହାଉସ୍' । ରାତିରେ କେବେ ତା ଦୋକାନ ସାମ୍ନାରେ କଉଁରେଲାରେ ବସି ପଡ଼ିଲେ, ଗୋଟାଏ ସୁନ୍ଦର କାନ୍‌ଭାସ୍ ଉପରେ ଆକାଶ-ପୃଥିବୀ ଏକାଠିହେଇ ଗପସପ କରୁଥିବାର ଶୁଣିହେବ ।

ମୋଟ ଉପରେ ଚମତ୍କାର ଜାଗା ।

ନ ଦେଖିଲେ ବିଶ୍ୱାସ କରି ହେବନି ।

ବସ୍ କିମ୍ବା ଟ୍ରକ୍‌ରେ କଦବା କେମିତି ସେଇବାଟେ ଗଲାବେଳେ, ଯାନ୍ତ୍ରିକ ସଙ୍ଗୀତ ସତ୍ତ୍ୱେ ଫୋତାମିଆଁର ସ୍ୱର ଶୁଣିବା ଆଦୌ ଆକସ୍ମିକ ନୁହେଁ । ରାତିର ଗୋଟାଏ ନିର୍ଦ୍ଦିଷ୍ଟ ପ୍ରହର ପର୍ଯ୍ୟନ୍ତ, ଯେତେବେଳେ ସାଧାରଣତଃ ମଣିଷମାନେ ଶୋଇ ପଡ଼ିଥାନ୍ତି, ପାହାଡ଼ିଆ ଚଢ଼େଇମାନେ ଯେମିତି ତାଙ୍କ କଥାଭାଷା ନିରୋଳାରେ ଆରମ୍ଭକରି ଦିଅନ୍ତି, ଏବଂ ଯେମିତି ଗଛବୃକ୍ଷ ଗୁରୁ ବୁଦ୍ଧଦେବଙ୍କ ପଞ୍ଚଶିଷ୍ୟ ଭଳି ଅନ୍ଧାରର ପୋଷାକ ପିନ୍ଧି ଧ୍ୟାନମଗ୍ନ ହୋଇଯାଆନ୍ତି—ସେମିତି ଫୋତାମିଆଁର ସ୍ୱର ବନ୍ଦ ହୋଇଯାଏ ।

ପୁଣି ସକାଳୁ ଚଢ଼େଇମାନେ ଗଳା ପରିଷ୍କାରକରି, ସମସ୍ତଙ୍କୁ ତାଙ୍କ ଘର ଜଗିବାକୁ କହି, ଖାଦ୍ୟ ଖୋଜିବାକୁ ବାହାରିଗଲା ବେଳକୁ ସେ ଉଠି ପଡ଼ିଥାଏ । ପରେ ପରେ ସେ ତାର ସ୍ୱର ଲମ୍ବେଇଦିଏ ଶ୍ରୁତିରୁ ବହୁ ଦୂରର ରାଜ୍ୟ ପର୍ଯ୍ୟନ୍ତ ।

ତାକୁ ଦେଖିଲେ ମନେହେବ, ସତେକି ସେ ଚାବିଦିଆ କଣ୍ଢେଇଟିଏ; ଚାବି ଥିବା ପର୍ଯ୍ୟନ୍ତ ତା'କାମ ନିର୍ଦ୍ଦେଶ ମୁତାବକ କରୁଥିବ ; ପୁଣିଥରେ ଚାବି ଦେଲେ ଚାଲିଲା—ଆଉ ଥରକ ପର୍ଯ୍ୟନ୍ତ ।

କହିବାକୁ ଭୁଲି ଯାଉଚି ଅସଲ କଥାଟା ।

'ମେଲୋଡ଼ି ହାଉସ' ମାନେ କ'ଣ ଜାଣନ୍ତି ?

ଧେତ୍, ନ ଜାଣିଲେ କଥାଟା ଜମିବ କେମିତି !

ଅର୍ଥାତ୍ ଫୋତାମିଆଁ ଯେଉଁ ଅର୍ଥରେ ଏହି ନାଁ ବାଛିଚି, ତାକୁ ଏଇଆ ବୁଝିବାକୁ ହେବ—'ଏଠାରେ ସମସ୍ତ ପ୍ରକାର ସଙ୍ଗୀତ—ବାଦ୍ୟଯନ୍ତ୍ର ମରାମତି ହୁଏ ।' ପୁଣି ଏଇଆକୁ ଆଉରି ନିଚେଇକରି ବୁଝେଇ କହିହେବ ଯେ, ଫୋତାମିଆଁ ଏ ଅଞ୍ଚଳର ଜଣେ ସାଧାରଣ ଲୋକ ନୁହେଁ; ସେ ସମସ୍ତ ସଙ୍ଗୀତ-ବାଦ୍ୟଯନ୍ତ୍ରରେ ପ୍ରବୀଣତା ଓ ଦକ୍ଷତା ହାସଲ କରିଥିବା ପୋଖତ ମଣିଷଟିଏ । ଅବଶ୍ୟ ତା'ର ଏହି ମର୍ମରେ କୌଣସି ସ୍କୁଲ୍ ବା ୟୁନିଭରସିଟି ଡ଼ିଗ୍ରୀ ନାହିଁ ।

ମଲା, ତା' ବୋଲି କ'ଣ ସେ ଜଣେ ଭଲ ସଙ୍ଗୀତଜ୍ଞ ହୋଇ ପାରିବନି ! ଆଚ୍ଛା କଥା ! ଡିଗ୍ରୀ ପାଇଲେ ହବ, ନହେଲେ ନାହିଁ ! ହଇହୋ, ଆଗ କାଳରେ ଏ ଦେଶର ମୁନି ଋଷିମାନେ ଏଡ଼େ ଏଡ଼େ ବଡ଼ ଯୋଗୀ ହେଲେ, କେଉଁ ବିଶ୍ୱବିଦ୍ୟାଳୟରୁ ସେମାନେ ଡିଗ୍ରୀ ପାଇଥିଲେ ? କହନ୍ତୁନାହାନ୍ତି ? ସୁତରାଂ ଫୋତାମିଆଁ ପାଇଁ ସେ ସନ୍ଦେହାନ୍ତୀୟ ପ୍ରଶ୍ନ ଉଠାଇବା ନିହାତି ଅବାନ୍ତର ଛଡ଼ା ଆଉ କ'ଣ ହୋଇପାରେ !

ଆପଣମାନେ ଶୁଣିଲେ ଆଶ୍ଚର୍ଯ୍ୟ ହେବେ—

ଏଭଳି ଗ୍ରେଟିଆ ସହରରେ, ତା' ଦୋକାନଟାରେ କିନ୍ତୁ ସବୁବେଳେ ଭିଡ଼ । କେହି ନା କେହି, କିଛି ନା କିଛି ବାଦ୍ୟ ଯନ୍ତ୍ରଟିଏ ଧରି, ତା' 'ମେଲୋଡ଼ି ହାଉସ୍'ରେ ଯାଇ ପହଞ୍ଚିଥିବେ । ଲୋକଟା ଖୁବ ଭଲ । ନଟାଳିଆ ଦାଢ଼ି ବହୁଳ ମୁହଁ ଭିତରେ ଗୋଟାଏ ସଙ୍ଗ ଦାନ୍ତଦାରଆ ମଣିଷଟିଏ ଯେ ବଞ୍ଚି ରହିଚ, ତାହା ସାଧାରଣତଃ ବାହାରକୁ ଜଣାପଡ଼େନି । ମୁଣ୍ଡବାଳ ଅଧିକରୁ ବେଶୀ—ବୟସର ଅବଉଡଲୁ ହେଉ ବା ଅପମିଶ୍ରଣ ଖାଦ୍ୟର ବାତ୍ୟାଯୋଗୁ ହେଉ—ଉପୁଡ଼ିଯାଇଚ ।

ଜୀବନର ଧୂ ଧୂ ଦ୍ୱିପହରବେଳେ ଯେସବୁ କାଣ୍ଡ କାରଖାନା ଘଟିଯାଇଚ । ପୁଣି ବାଳର ଅବଶିଷ୍ଟାଂଶ ଧଳା-କଳାର ଏକ ଅଦ୍ଭୁତ କକ୍‌ଟେଲ । ଆଖିରେ ତା'ର ଖୁବ୍ ଶକ୍ତିଶାଳୀ ଲେନ୍‌ସବାଆ ଚଷମା । ବାଦ୍ୟ ଯନ୍ତ୍ରସହ ସ୍ୱରକୁ ଷୀଣକରି, ସେଇ ଚଷମାଦିଆ ଆଖିରେ ସେ ଆଗନ୍ତୁକକୁ ଚାହିଁଲେ ମନେହେବ, ସତେ ଯେମିତି କୋଉ ଜ୍ୟୋତିର୍ବିଜ୍ଞାନୀ ଲେନ୍‌ସ ସାହାଯ୍ୟରେ କୌଣସି ଗ୍ରହର ଗତିବିଧି ଲକ୍ଷ୍ୟ କରୁଛନ୍ତି ।

ସେ କଥା କହିଲେ, ସଙ୍ଗୀତରେ ହିଁ କୁହେ ।

ତା' ମାନେ ତା' କଥା ସଙ୍ଗୀତ ଭଳି ଶୁଭେ ।

ତେବେ ସେଇଟା ସଙ୍ଗୀତର କୋଉ ରାଗ ବା ରାଗିଣୀକୁ ଆଶ୍ରୟ କରିଛି ତାହା ସେଥିରେ ଦକ୍ଷତା ଥିବା ଜଣେ କେବଳ ଜାଣିପାରିବେ । ମୁଁ ରାଗରାଗିଣୀର ଧାର୍ ଧାରେନା । ଫୋତାମିଆଁ ସ୍ୱର ଛୁଟାଇଥିଲେ, ପୁଣି ତାହା ବିଳମ୍ବିତ ହେଲେ, ମୋର ଧୈର୍ଯ୍ୟ ତୁଟେ । କଥାଭାଷା ହେଲେ ବରଂ ସହି । ମୋଟ ଉପରେ ମୁଁ ସଙ୍ଗୀତ ରସପାଇଁ ଏକ ବେରସିକ ବା ନୀରସ ଲୋକ । ତେଣୁ ମୁଁ ଫୋତାମିଆଁ ପାଖକୁ ଯେତେଥର ଯାଇଚି, ଯାଇଚି ରାତିର ଦ୍ୱିତୀୟ ପ୍ରହରକୁ । ଅନ୍ତତଃ କ୍ଲାନ୍ତ ସ୍ୱର ତା'ର କାଲେ କଥା ହେବାକୁ ଚାହୁଁଥିବ—ସେଇ ସମୟରେ ତେଣୁ ଯାଏ ।

ମୁଁ ପହଞ୍ଚିଲେ, ଫୋତାମିଆଁ ଆତିଥେୟତା ଦେଖାଇବାକୁ ଭୁଲେ ନାହିଁ । ସେ ସାଙ୍ଗେ ସାଙ୍ଗେ ଘର ଭିତରକୁ ଅନେଇ ଫର୍ମାସ ଦିଏ—'ଅରେ ସୁନନ୍ଦ ହୋ ! ମେହେମାନ୍ ଆୟେ ହେଁ, କୁଛ୍ ତୋ ଭେଜୋ...' ତା' ପରେ ପରେ କିଛିଏ ଯାନ୍ତ୍ରିକ ସଙ୍ଗୀତର ମୂର୍ଚ୍ଛନା, କିଛି ଚୁନା ଚୁନା ହସ, କିଛି ସମ୍ଭ୍ରମ ବାକ୍ୟଗୁରୁଗ୍ଧ ଏବଂ ତା'ପରେ ନିଜେ ଘର ଭିତରକୁ ଉଠିଯାଇ କାହାକୁ ଗାଳିଫଜିତ୍ କରିବା, ମୋର ଆଖି ଦେଖା ଅନୁଭୂତି ।

ପୁଣି ଆସି ସେ ତା' ଜାଗାରେ ବସେ ଏବଂ ବେଳେବେଳେ କହେ—'ଦେଖ୍ ତୋ ବାବୁ, ଇତ୍‌ଭଳି ଦିନରେ—(ମୁଁ କହି ରଖେ, ଯେଉଁଥରକ କଥା ମୁଁ ଲେଖୁଚି,

ସେଥରକ ପ୍ରକୃତରେ ହିଁ ସେଦନ ଉଦ୍ ପବ ପଢ଼ଥିଲ ।) ବବ ମୋର ଘରେ ଚନ ଟିକେ ରଖିଲ ନାହିଁ । ବଡ଼ା ବେଖିଆଲ୍ ଔରତ୍ ସେ ଅଛ ବାବୁ' । ତା' କଥା ନ ସରୁଣୁ ବାହାରପଟୁ ଶ୍ରେଷ୍ଠ ପିଲଟିଏ ଗ୍' ଦ' ଗିଲସ ଧର ଆସି ପହଞ୍ଚେ । ଯଥାଶୀଘ୍ର ପିଇବା ପବ ପରେ, ବନା ବାକ୍ୟ ବ୍ୟୟରେ ସେ ଗିଲସ ଧର ଗ୍ଲଯାଏ ।

ମୁଁ ସେ ପିଲଟି ବଷୟରେ କେବେ କଛ ଜାଣିବାକୁ ଆଗ୍ରହ ପ୍ରକାଶ କରନ । ତଥାପି ମତେ ସେ ଚରତ୍ରଟି କେମିତ ବେଖାପ୍ ଲାଗେ । ସେ ଫୋଟାମିଆଁର 'ମେଲେଡ଼ି ହାଉସ୍'ର ଛାର କମ୍ବା ହାତୁଡ଼ିଭଳ ବ କେବେ ଦରକାରୀ ଜଣାପଡ଼ନ । ସତେ କ କୌଣସି ଏକ ନାଟକର ଅବାଞ୍ଛିତ ଚରତ୍ରଟିଏ ସେ, କେବଳ ଫଭ୍ରାନ୍ତର ପରଚୟ ଦେବାକୁ ସେ ଉଇଁପିଲ୍ଲ ଗ୍ଲ ଆସିଥିଲ; ଗ୍' ଦେଲ, ପିଆ ସଇଲ, ସାଲ୍ୟୁଟ୍ ବଜେଇ କପ୍ ଉଠାଇ ଗ୍ଲଗଲ୍ ।

ବାସ୍,···ସେତକି ।

ଫୋଟାମିଆଁର ଏ ଘରଟି ରାସ୍ତା ପାଖକୁ ଲଗିଥିଲେ ମଧ୍ୟ ସେ ପଡ଼ାର ଅନ୍ୟାନ୍ୟ ଘରସବୁ ଥିଲେ ଦୂରକୁ;—ମାନେ ତା' ଘରର ପଛ ପଟକୁ । ମାତ୍ର ଏ ପିଲଟି ଆସେ ବାହାର ପଟୁ । ରାତରେ ଫୋଟାମିଆଁର 'ମେଲେଡ଼ି ହାଉସ୍'ରୁ ପଛପଟକୁ ଗ୍ହିଁଲେ ରାତର ଅନ୍ଧାର ଚଦର-ଡଙ୍କା ପଡ଼ାରେ ଡାହାଣୀ ଆଲୁଅ ଭଳ ଜକି ଜକି ହେଉ ଦଶେ କେତୋଟା ଆଲୁଅ । ସେସବୁ ସେ ବସ୍ତିର 'ଦୀପଂ ଜ୍ୟୋତ ପରମବ୍ରହ୍ମ' । କେବଳ ଫୋଟାମିଆଁ ଘରେ ବଜୁଳି ଆଲୁଅ । ସେଇତକ ତା'ର ଫଭ୍ରାନ୍ତ । ତେଣୁ ପ୍ରଥଥର ସେ ପିଲଟା ଅନ୍ଧାରରେ ମିଶିଯିବା ପର୍ଯ୍ୟନ୍ତ ମୁଁ ତାକୁ ଗ୍ହିଁରହେ ଏବଂ ତା'ପରେ ଫୋଟାମିଆଁକୁ କିଛ 'ପଗ୍ଭରବ' 'ପଗ୍ଭରବ' ହେଉ, କିଛ ପଚାର ନ ପାର ସେକଥା ଭୁଲଯାଏ ।

କିନ୍ତୁ ପ୍ରଥଥର ମୁଁ ଯିବାପରେ—

ସେ ତା' ବବକୁ ଗ୍' ଫରମାସ କରେ—

ଭୁଲଯିବାତ ପ୍ରଶ୍ନ ଉଠେନ କେବେ—ଏବଂ ଗାଳଦଏ, ଭତରକୁ ଯାଇ । ସେମିତ କିଛ ଗୋଟାଏ ପରଚତ ବାହାନା ଆଣି ମୋ' ଆଗରେ ଥୁଏ । ଆଜ ଗ୍' ଗୁଣ୍ଡ ନାହିଁ, ଆଜ କ୍ଷୀର ଛିଡ଼ ଯାଇଚ, କିମ୍ବା ସେମିତ ଆଉ କିଛ । ଫୋଟାମିଆଁ କେବଳ ମୋ'ପାଇଁ ଏମିତ କରେ, କି ଆଉ କାହାପାଇଁ ବ କରୁଥାଏ, ମୁଁ ଠିକ୍ ଜାଣେନା ।

ସେଦିନ କେଜାଣି କାହିଁକି ମତେ ତା'ର ହାବଭାବ ଅସ୍ୱାଭାବିକ ମନେହେଲା ।
ମୁଁ ଜାଣିପାରିଲି, ସେ ଆଜି କୌଣସି ଗୋଟାଏ 'ଗାଗ'ର ରିହାର୍ସାଲ୍ କିଛି ସମୟ ଆଗରୁ କାରିଥିଲା ଓ ମୁଁ ଆସିବାପରେ ଲୁହପୋଛି, ଚଷମା ସଫାକରି, କିଛି ନ ହୋଇଥିବା ମଣିଷଟି ଭଳି ମୋ' ସାଙ୍ଗରେ ଆଳାପ ଜମେଇଲା—ଠିକ୍ ଗୋଟିଏ ଅଭିନେତା ଭଳି ।

ମୁଁ କିନ୍ତୁ ଘରୁ ତା'ଉପରେ ରାଗି କି ଯାଇଥିଲି ।

ଦୁଇବରଷ ହୋଇଗଲାଣି ;

ଅଥଚ ମୋ' କାମଟା ହୋଇ ପାରିଲାନି ।

ଫୋଡାମିଆଁ ଦକ୍ଷ କାରିଗର ବୋଲି ଏତେ କଥା । ନହେଲେ ଏଇ କାମଟାକୁ ଆଉ କୋଉଠି ନେଇ କରି ଆଣନ୍ତିଣି । ଯେମିତି ସେମିତି କାରିଗର କ'ଣ ଅଭାବ ଅଛନ୍ତି ? ଆମଦେଶରେ ପରା ଦୁ'ଦିନ ମଟର ଧୋଇଥିବା ଟୋକା ତା'ପର ଦିନକୁ ମେକାନିକ୍ ବନିଯାଏ । ଆଉ ସିନେମାରେ ଥରକପାଇଁ ମାଇଚଆ ରୋଲ୍ କରିଥିବା ଲୋକ ନିଜ ନାଁ ପରେ ବ୍ରାକେଟ୍ ଭିତରେ 'ଚଳଚ୍ଚିତ୍ର ଅଭିନେତା' ଲେଖି, ଦିନେ ଥିଏଟରରେ ଡାଇରେକ୍ଟର ହୋଇ ଓହ୍ଲେଇପଡ଼େ । ତେଣୁ ତଫାତ୍ ରହିଯାଏ ସେଇଠି ।

ମୁଁ ବାଟଯାକ ବିରକ୍ତ ହେବାପାଇଁ ଯେତେଦୂର ସମ୍ଭବ ଗମ୍ଭୀରହୋଇ, ମୁହଁଟାକୁ ଭ୍ରୁକୁଞ୍ଚାକରି ଆସି ପହଞ୍ଚିଲା ପରେ, ଫୋଡାମିଆଁର ଭାବଗମ୍ଭୀର ମୁହଁକୁ ଦେଖି ମୋର ଅସଲ ସ୍ୱଭାବ ବାହାରି ପଡିଲା । ଧେତ୍, ସେଇଥିପାଇଁ ପରା ଜୀବନରେ ଉପର ପାହାଚକୁ ଉଠିବାପାଇଁ ମୁଁ ଅନେଶୋତ ଧକ୍କା ଖାଇଲିଣି । ଏ ଯୁଗରେ ସବୁ ହବ, ଭଲ ମଣିଷଟିଏ ହବନି । କାରଣ ଧକ୍କା ଖାଇ ଖାଇ ତମ କୋତରା ଭିଡ଼ିସିବ; ପ୍ରଭୁଭକ୍ତ କୁକୁର ଅଇଁଠା ଭାତ ଖାଇଲା ଭଳି ।

ଫୋଡାମିଆଁ ମତେ ଅଦାବଦ୍ ଜଣାଇଲା—

ଏବଂ ସବୁଥର ଘଟଣା ଭଳି ଏଥରକ ବି ହେଲା । ମାତ୍ର ଏଥରକ ମୁଁ ତାଙ୍କ ବିବିଙ୍କ ହାତରୁ ଚା' ଖାଇବାକୁ ଜିଦ୍ ଧରି ବସି ସେ ଟୋକା ଆଣିଥିବା ଚା' ଫେରାଇଦେଲି । ଫୋଡାମିଆଁର ମୁହଁ ହଠାତ୍ ରଙ୍ଗହୀନ ଦିଶିଲା, ମେକ୍ଅପ୍‌ବିହୀନା ଆଧୁନିକା ନାରୀର ମୁହଁ ଭଳି । ତଥାପି ସଲଜ୍ଜ ସଂଭ୍ରମ ବାହାଣୀରେ ସେ ଅନୁରୋଧ କଲା—'ସିର୍ଫ ଇସିବାର ଖାଇଯିଏ; ଏଣିକି ବିବି ଜରୁର୍ ବନାଇଦବ' ।

ମୁଁ ଜୋରଦେଇ କହିଲି—'ନା', ଯିଏ ମୋ ସକାଶେ ପ୍ରତିଥର ଏତେ ଗାଳି ଶୁଣୁଛନ୍ତି, ତାଙ୍କ ସହିତ ମୁଁ ଟିକିଏ ପରିଚିତ ହେବି । ଅବିକଳ ମୋଅରି

ଭଲିଆ ଲୋକଟିଏ ସେ ହୋଇଥିବେ ନିଶ୍ଚେ । ମୋ' ସ୍ତ୍ରୀ ମତେ ବହୁତ ଗାଳିଦିଏ, ମୁହଁ ଖର୍ଗପକାଇ କହେ, ମୁଁ ସହିଯାଏ । ହେଇଛି, ସବୁଚ ଯେମିତି ଆପଣଙ୍କଠାରୁ ଜ୍ଞାନଷ୍ଟା ନେଇ ପାରିନଥିବାରୁ ।

ସେ ଏମିତି ଆଗରୁ ଚିଡ଼ିଚିଡ଼ା ନଥିଲି ମ । ଏଇ ସହରରେ ପାଦଦେଲା ଦିନରୁ ସେ ଭିନ୍ନ ରକମର ହୋଇଯାଇଚି, ଚିଡ଼ାଧରି ଯାଇଛି । ନହେଲେ ଭଙ୍ଗା ହାର୍‌ମୋନିଅମଟାକୁ ନେଇ ସଜାଡ଼ିବାକୁ ମତେ କିଦ୍ କାହିଁକି କରନ୍ତା ! ···ଛାଡ଼ନ୍ତୁ ସେ କଥା । ଯାଆନ୍ତୁ, ଆମ୍ଭଙ୍କ ବିବିଙ୍କୁ କୁହନ୍ତୁ, 'ଗ୍ୟ' ଥରେ କରିବାପାଇଁ ।

ସେ ଖଚଡ଼ା ଟୋକାଟା ଏତେବେଳ ଯାଏ ଚୁପ୍ ହୋଇ ଆମ କଥା ସବୁ ଶୁଣୁଥିଲି—ପାଟି ଅଲ ଆଁ କରି ଅନେଇଲା ମୋ ମୁହଁକୁ । ଖସି ପଡୁଥିବା ଢିଲା ପେଣ୍ଟଟାକୁ ଦୁଇ-ତ୍ରିଥର ଟେକିଥିଲା ଉପରକୁ ଏବଂ ଅନେକ ଥର ନାକ ସୁଁ-ସାଁ କରି ବୋହି ଆସୁଥିବା ଶର୍ଦ୍ଦିର ତରଳ ପଦାର୍ଥଗୁଡ଼ାକୁ ଉପର ଆଡ଼କୁ ଶୋଷାଡ଼ି ନେଇଥିଲା । ଥିଲା-ଥିଲା, ହଠାତ୍ ମୋ କଥା ସରି ଆସିବାବେଳକୁ କହି ଉଠିଲା— "ଇଏ ଆଙ୍କର ବିବି କୁଆଡ଼ୁ ଆସିବ ବା ' କେତେ ବରଷ ହବ ଆଙ୍କ ବିବି ସ୍ତ୍ରୀ ଆଉ ଜଣକ ସାଥିରେ ପଳେଇଗଲା । ଅଇଗ୍ଲ ଘର ଭିତରେ ଯାଇ ଦେଖୁନା, ଇଏ ବୁଢ଼ା ଯେମିତି ବେହେଲ ହୁଏନା···"

ଟୋକାଟା ଯେମିତି ଏକା ନିଶ୍ୱାସରେ କହି ଯାଉଥିଲା, ଯେମିତି କେତେ କ'ଣ କହି ଯାଇଥାନ୍ତା— ହଠାତ୍ ଫୋଚାମିଆଁର ଆଖିରେ ଆଖି ମିଶିବାରୁ ତା' କଥା ଅଧା ବନ୍ଦ ହୋଇଗଲା । ସେ ପୁଣି ଥରେ ନାକ ଶୋଷାଡ଼ି, ପେଣ୍ଟ ଟେକି, ଜ୍ୱ'ଥିବା ଗିଲାସ ଧରି ବାହାର ଅନ୍ଧାରରେ ମିଶିଗଲା । ମୁଁ କେତେବେଳ ପର୍ଯ୍ୟନ୍ତ ସେ ଟୋକାର ଯିବା ବାଟକୁ ଗ୍ରହିଁଥିଲି; ଅନ୍ଧାର ଭିତରେ ଦୃଷ୍ଟି ପହଁରଉ ଥିଲି— କାଳେ କୋଉଠି ଠିଆହୋଇ ସେ ଫୋଚାମିଆଁକୁ ଉଦ୍ଦେଶ୍ୟ କରି ଫଗେଇ ହୋଇ କହୁଥିବ ; 'ହୋଇଚି, କହି ଦେଇଚି ତୋ କଥା. ଅଇଗ୍ଲ ମୋର କ'ଣ କରିବୁ କର ! ପୂଉଚୁ ପୁତ୍··· ପୂଉଚୁ ପୁତ୍'···

ନା, ଟୋକାଟା ଏତେ ଚ୍ଚାଲାକ୍ ନ ଥିଲା ।

ସେ ଥିଲା ଜବୋଧ ପ୍ରକୃତିର ।

ମୁଁ ତାଆର କଥା ତର୍ଜମା କରୁଥିଲା ବେଳେ ଫୋଚାମିଆଁ କଥାରେ ମୋ ତାଦ୍‌ଦା ଭାଙ୍ଗିଲା । ଦେଖିଲି, ଆଗରେ ଫୋଚାମିଆଁ ଠିଆହୋଇଚି ଏକାନ୍ତ କରୁଣ ଚରିତ୍ରଟିଏ ସାଜି,—(ବୋଧହୁଏ କୌଞ୍ଚ ପକ୍ଷୀର ମୃତ୍ୟୁ ଆଖି ଆଗରେ ଦେଖି ଅନନ୍ତ କାରୁଣ୍ୟମୟ ହୋଇଥିବା ମହର୍ଷି ବାଲ୍ମୀକିଙ୍କ ଭଳି । ସେ ମୋ ଉଦ୍ଦେଶ୍ୟରେ କଥା

କହୁଥିଲି ଏବଂ ତାହା ଶୁଣି ବହୁ ଦୂରରୁ ଆସିଥିବା ଗ୍ରାମଫୋନ୍‌ର କଥା ଭଲ ଶୁଭୁଥିଲା ।

...'ଆଜ୍ ଓ୍ୱହ ଇଦ୍ । ସେ ଖୁସିଗଲା; ଯିଏ ମତେ ମୋ ଜରୁରତ୍ ସମୟରେ ଗୁଁ ବଢ଼ାଇ ଦଉଥିଲା, ସେ ହୁଣ୍ଡା ହୁଆ ମକାନ୍‌ର ଯିଏ ରୌନକ୍ ଥିଲା,... ସାତ୍ ସାଲ ହେଇଗଲା ବାବୁ । ଉସିଦନ୍ ସଙ୍ଗୀତ ଆସରକୁ ମୁଁ ଯାଇଥିଲି, ବହୁତ ରାତ୍‌ରେ ଘର ଲେଉଟିଲି । ବାସ...ସବ୍ ଶୂନ୍‌ଶାନ୍...ଇଦ୍‌କା ଦନ୍ ମେଘ ଦଲ୍ କା ଖୁନ୍ଦ ଡୁବିଗଲା, ବାବୁ ' ବହୁତ ୟାଦ୍ ଆସୁଚି । ଯେମିତି ଓ୍ୱହ ଔରତ୍ ଏ ମକାନ୍‌ରେ ଅଛି, ହସୁଚି, କଥା କହୁଚି, ଗୁଁ ପିଲାଉଚି, ତା ଦେହ୍‌ର ଝୁସ୍‌ବୁ ଭରଦଉଚି... ଲେକିନ୍...କଭି ହମ୍ ତାକୁ ଗାଳିଦେଇ ନ ଥିଲି । ଅଭି ଯଦି ଗାଳି ଦଉଚି ତୋ ତାକୁ...ଉସ୍‌କୀ ୟାଦ୍...ସବ୍‌କୋ । ବାବୁ, ବୁରା ମତ୍ ମାନିୟେ । ଏ ଜିନ୍ଦେଗୀ ଶାଲ୍..."

ସେ ଆଉ କିଛି କହି ପାରିଲାନି । ଗାମୁଛା କାନିରେ ମୁହଁ ଲୁଚାଇ ଘର ଭିତରକୁ ଚାଲିଗଲା । ମୋର ମନେ ହେଲା, ଗୋଟାଏ ସଙ୍ଗୀତର ବେସୁରା ରାଗିଣୀ ଧରି କିଏ ଯେମିତି ମନଇଚ୍ଛା ବାଦ୍ୟଯନ୍ତ୍ର ବଜାଉଛି । ରାଗ ନାହିଁ, ଲୟ ନାହିଁ... ତାଳ ନାହିଁ...ବାଜୁଚି ତ ବାଜୁଚି । କାନ-ପାଟି ଝାଁ-ଝାଁ ହେଇଯାଉଛି । ତଥାପି ସେ ବଜଉଚି ।

ଭାରି ଅତିଷ୍ଠ ଲାଗିଲା ମତେ ।

'ମେନ୍‌ଚେଷ୍ଟର ହାଉସ'ର ବାରଣ୍ଡା ତଳକୁ ମୁଁ ଓହ୍ଲାଇ ଆସିଲି । ଅନ୍ତତଃ ଅଶାନ୍ତ ପରିବେଶରୁ ରକ୍ଷା ମିଳିଯିବ ଟିକେ । ବାରଣ୍ଡାରୁ ଓହ୍ଲାଇ ତଳେ ପାଦ ରଖୁ ରଖୁ ଫୋଡ଼ାମିଆଁର ଦଗ୍‌ଧ ହୃଦୟର ଦୃଶ୍ୟ ଆଖି ଆଗରୁ ଦୂରେଇ ଯାଇ, ଭାସି ଉଠିଲା ମୋ ସ୍ତ୍ରୀର ଅଦ୍ଭୁତ ଅବର୍ଣ୍ଣନୀୟ ମୂର୍ତ୍ତିର ଭାବଭଙ୍ଗୀ । ଦ୍ୱେଷ-କଷାୟିତ, ଲୁହ-ଆଲୁଳାୟିତ, କଣ୍ଠଗୃହୀତା କାରୁଣ୍ୟମିଶ୍ରିତ ମୁହଁରେ ବିଚିତ୍ର ସିଂଫୋନୀ..."ମୋ ଝିଅର, ହାର୍‌ମୋନିୟମ୍‌ଟା ସଜାଡ଼ି ଆଣି ପାରିଲ ନାହିଁ ! ଗୋଟିଏ ବୋଲି ଝିଅ, କୋଉ ନଅଟା ଛଅଟା ଥାଆନ୍ତେ କି ! ପିଲାଟା କେତେ ମନଦୁଃଖ କରୁଚି । ତମେ ଆଜି ଯାଇ ଆଣ । ଗଲ,...ଯିବନି ଏଇନା । କ'ଣ ଯାଉନା କି ?...

ସବୁଦିନେ ନୁହେଁ, ଦିନେ ଦିନେ ତାଙ୍କର ଝିଅ 'ରଣ୍ଟି' କଥା ମନେ ପଡ଼ିଯାଏ । ରଣ୍ଟିର ସ୍ମୃତି ସହ ଏ ହାର୍‌ମୋନିୟମ୍‌ଟାର ତ ଅବିଛିନ୍ନ ସମ୍ପର୍କ । ଶୂନ୍ୟଗର୍ଭା ମାତୃତ୍ୱର ଗ୍ଲାନିରେ ନିଜକୁ କଳଙ୍କିତ ମନେକରୁଥିବା, କେବଳ ମୋ ସ୍ତ୍ରୀ କାହିଁକି, ତା' ଜାଗାରେ ଯେଉ ମାଆ ରହନ୍ତା ସେ ତାହାହିଁ କରନ୍ତା । ମାଆର

ମମତା ବୋଲି ସେ ଯେଉଁ 'ରଣି' ନାମକ ପ୍ରତିମାଟି ଗଢ଼ିଥିଲା, ହଠାତ୍ ଦିନେ ଖେଳୁ ଖେଳୁ ହାତରୁ ପଡ଼ି ତାହା ଭାଙ୍ଗିଗଲା ।

ମୁଁ କଥାଟାକୁ ଆହୁରି ସ୍ପଷ୍ଟ କରିଦିଏ ।

ଦୁଇ ବର୍ଷ ତଳେ, ଏଇ ଇଦ୍‌ଦିନ,—ରଣିର ଅପମୃତ୍ୟୁ ଘଟିଥିଲା ଦୂରର ସେ ପାହାଡ଼ିଆ ଘାଟି ପାଖରେ । କଟକରୁ ନୂଆ ହାର୍‌ମୋନିୟମ୍‌ଟେ କିଣି ଯୋଉଦିନ ରଣି ମୋ ସହିତ ଏଇ ସହରକୁ ଫେରୁଥିଲା, ସେଦିନ ସନ୍ଧ୍ୟାରେ ଏଇ 'ସବୁ ହରାଇଥିବା ପାହାଡ଼' ପାଖରେ ରଣି ସବୁଦିନପାଇଁ ମୋଠୁଁ ଏବଂ ତା'ର ସ୍ନେହ କାଙ୍ଗାଳୁଣୀ ମାଆଠାରୁ ବିଦାୟ ନେଇଥିଲା ଏକ ଜିପ୍ ଆକ୍‌ସିଡେ଼ଣ୍ଟରେ । ମୋର ଚେତା ଆସିଥିଲା ହସ୍‌ପିଟାଲ୍‌ରେ ଦଶଘଣ୍ଟା ପରେ । ପ୍ରଥମେ ମୁଁ ହସ୍‌ପିଟାଲ୍‌ର ଶଯ୍ୟା ପାଖରେ ମୋ ସ୍ତ୍ରୀଙ୍କୁ ଲୋତକାପ୍ଲୁତ ବଦନରେ ବସିଥିବା ଦେଖି, ଆଗ ପଚାରିଥିଲି ରଣିକଥା ।

ସେ କିଛି ନ କହି କେବଳ କାନ୍ଦିଥିଲା ।

ଅତି ବାଧ୍ୟକରି ପଚାରିବାରୁ ଖଣ୍ଡଖଣ୍ଡ ହୋଇ ଭାଙ୍ଗି ଯାଇଥିବା ହାର୍‌ମୋନିୟମ୍‌ଟିକୁ ଏକାଠି ସଂଗ୍ରହକରି ମୋ ଆଗରେ ଆଣି ଥୋଇ ଦେଇଥିଲା । କିଛି ଦିନ ପରେ ମୋର କ୍ଷତ ଶୁଖିଗଲା; କେବଳ ଚିହ୍ନଟା ଯାହା ରହିଗଲା । କିନ୍ତୁ ମୋ ସ୍ତ୍ରୀର ଅଜଣା ଜାଗାରେ ଯୋଉ କ୍ଷତଟା ହୋଇଥିଲା ତାହା ଜମା ଶୁଖିଲା ନାହିଁ । ଅନେକ ଚିକିତ୍ସା କରିଚି; କିନ୍ତୁ କିଛି ଫଳ ପାଇନି । କେବଳ ସେ ମତେ ସବୁବେଳେ କହେ, ଏ ହାର୍‌ମୋନିୟମ୍‌ଟା ସଜାଡ଼ି ଦିଅ; ମୋ ଝିଅ ଗୀତ ଶିଖିବ, ତା' ଗୀତ ଶୁଣିଲେ ମୁଁ ଆପେ ଭଲ ହୋଇଯିବି । ଶୁଣୁଚ···, କେବେ ସଜାଡ଼ି ଆଣିବ ?

ଫୋଟାମିଆଁ ବି ଏକଥା ଜାଣେ ।

ତାକୁ ମୁଁ ସବୁକଥା ଖୋଲି କହିଚି । ସେଇଥିପାଇଁ ବୋଧେ ତା'ର ମୋ ପ୍ରତି ଏତେ ଆଦର । ମୁଁ ଘରକୁ ଫେରୁଥିବା ସମୟରେ ଭାବୁଥିଲି, ନିଜ ଜୀବନକୁ ବେଶୁରା କରିଥିବା ଲୋକହିଁ କେବଳ ବୋଧହୁଏ, ଜୀବନରେ ସଫଳ କାରିଗର ହୋଇପାରିବ । ନଚେତ୍ ଏକବାରେ ଭଙ୍ଗା ଜିନିଷଟାକୁ ସଜାଡ଼ିବାକୁ ସେ ଆଶା ଦିଅନ୍ତା କେମିତି ?

ଏଦୀର ଭିତରେ ପୁଣି ବର୍ଷଟାଏ ଗଡ଼ିଗଲାଣି । ଶୁଣିଲି, ଆଜି ଇଦ୍ ପର୍ବ । ଆଉ ଘଣ୍ଟାକ ପରେ ମୁଁ ଫୋଟାମିଆଁ ଘରକୁ ଯିବି । ବର୍ଷେ ହେଲା ତା'ପାଖକୁ ଜମା ଯାଇନି । ଭାବୁଚି, ଏଥର ଦିନ ବେଳା ଯିବି ।

●

# ଜଣେ
# ମହାପୁରୁଷଙ୍କ ମୃତ୍ୟୁ ସମ୍ପର୍କରେ

॥ ଏକ ॥

ମ୍ୟୁନିସିପାଲ୍‌ଟି ଠେଲା-ଗାଡ଼ିରେ ଶବକୁ ନେଇଗଲାବେଳେ ଜଗୁ ବାରମ୍ବାର ଅଟକି ଅଟକି ନିଜ ମୁହଁରୁ ଝାଳ ପୋଛୁଥିଲା । ବେଳେବେଳେ ମଲା ଲୋକଟାର ବିବର୍ଣ୍ଣ ମୁହଁଟାକୁ ଚାହିଁ ନିଜ ମୁହଁରେ ବିଚିତ୍ର ଭାବଭଙ୍ଗୀ ପ୍ରକାଶ କରୁଥିଲା ।' ସୂର୍ଯ୍ୟ ସେତେବେଳକୁ ଅସ୍ତ ଯାଇ ନଥିଲେ; ମାତ୍ର ଅସ୍ତ-ଯାତ୍ରାର ପ୍ରଥମ ପର୍ବର ଆୟୋଜନ ହୋଇସାରିଥିଲା ।

ଲୋକଟା ଆଡ଼ୁ ମୁହଁ ଫେରାଇ ନେଇ ଜଗୁ ଗାଡ଼ି ଠେଲୁଥିଲା, ଏବଂ ଭାବୁଥିଲା—ଏ କାମଟା ଯେ ତା'ର ଉପରେ ପଡ଼ିବ, ସ୍ୱୀ କ'ଣ ସିଏ ଜାଣିଥିଲା । ...ଅଦ୍ଭୁତ ଯୋଗାଯୋଗ ।

ଗୋଟାଏ ପର୍ବର ପରିସମାପ୍ତି ଘଟିଲା କି ନା, କହି ହେବନି,—ତେବେ ଗୋଟାଏ ଅଶ୍ଳୀଳ ଜୀବନର ଅଧା-ଲେଖା ଇତିହାସରେ ପୂର୍ଣ୍ଣଚ୍ଛେଦ ପଡ଼ିଲା ନିଶ୍ଚିତ । ଏଣିକି ତା' ନାଁ ଶୁଣି କେହି ଆତଙ୍କିତ ହେବେ ନାହିଁ, କିମ୍ବା ଦରକାର ବେଳେ, କେଉଁଠି କାହା ସହିତ ମୁକାବିଲା କରିବା ଆଶାରେ, କେହି ଆସି ଆଉ ତାକୁ ଖୋଜିବେନି । ରାଣୀହାଟ ପୋଲର ଦ'ପଟେ ଥିବା ବସ୍ତିରେ ନିହାତି ଅଭଦ୍ର ଓ ବେଖାତିର ଭାବରେ ଅଶ୍ରାବ୍ୟ ଗାଳି ପ୍ରୟୋଗକରି ବୁଲୁଥିବାର କେହି ଆଉ ତାକୁ ଦେଖିବେନି ।

କାଲି ରାତିରେ ସେ ତା'ର ଶେଷ ନିଶ୍ୱାସ ଛାଡ଼ିଥିଲା । ଠିକ୍ କେତେବେଳେ ସେ ମଲା, ତାହା କେହି କହି ପାରିବେନି । କାରଣ ତା' ପାଖରେ—ଗଲା ରାତିରେ କେହି ନଥିଲେ । ଠିକ ଗଲା ରାତିରେ କାହିଁକି, କିଛିଦିନ ହେଲା ତା'ର ଦେହ ଅସୁଖ

ସମ୍ବାଦର ସାମାନ୍ୟ ସୂଚନା ମିଳିବାଠାରୁ, ତା' ପାଖକୁ ପ୍ରାୟତଃ ଆଉ କେହି ଯାଉ ନଥିଲେ । ଏଇ ପୋଲର ଉଭୟ ପଟେ ଶାଖା ମେଲେଇଥିବା ତା'ର ବରଗଛ ପାଖବାଖକ ଚଉଦର ଜଣେ ଅଧେ, କେତେବେଳେ କେମିତି, ଆବଶ୍ୟକତାର ତାଡନାରେ ତା' ପଲାକୁ ଯାଉଥିଲେ;—ପଗୃତ ଦେଉଥିଲେ—କ ରଜା ଦାଦା କେମିତି ଅଛୁ ? ଦେହ ଭଲ ନାହିଁକି ?

କିଛି ନା କିଛି ଜବାବ ମିଳେ ତା'ଠୁଁ ଆଶା ଓ ଗଭୀର ଆତ୍ମବିଶ୍ୱାସର । ରୋଗ ତାକୁ ଅପାରଗ କରିପାରି ନାହିଁ, ଏକଥା ସେ ପ୍ରମାଣ କରିବାକୁ ଚାହେଁ ।

ରଜାଦାଦାର ଏ ପଲାଟି ଅଧିକାଂଶ ସମୟରେ ଖାଲି ଥାଏ । କାରଣ ସେ ଖୁବ୍ କ୍ ସମସ୍ତ ସେଠି ରହେ । ସବୁ ରାତିରେ ତାକୁ ମଧ୍ୟ ସେଠିକି ଆସିବାକୁ ପଡ଼େ ନାହିଁ । କୋଉ ରାଣୀର ଅନ୍ତଃପୁରେ ତା'ର କୋଉ ରାତି କଟେ, ତା'ର ହିସାବ ସେ ନିଜେ ରଖେ ନାହିଁ । ତେବେ ଏ କଥା ସତ ଯେ, ସେ କାହା ପ୍ରତି ପାତର-ଅନ୍ତର କରେନି । ତାକୁ କେନ୍ଦ୍ରକରି ଯଦି ଏମାନଙ୍କ ଭିତରେ କେବେ କେମିତି କଳିକଜିଆର ସୂତ୍ରପାତ ହୁଏ, ତେବେ ତା'ର ପରିଣତି ଯେ ଭୟାବହ—ଏହା ସେହି ରାଣୀମାନେ ଅବଗତ ଥିଲେ । ରଜାଦାଦାର ରୁକ୍ଷ, ଟାଆଁସିଆ ଅଥଚ କର୍କଶ ଆଙ୍ଗୁଠିର ନିଷ୍ଠୁର ସ୍ପର୍ଶ ବହନ କରିବାକୁ ହୁଏ, ଠିକ୍ ପାପର କୁଣ୍ଢକାଠ ଭଳି ।

ଯାହାର ଯାହା ଅଭାବ ସବୁ ପୂରଣ କରେ ସେ । ଆଳୁ ଶୁଖୁଆ ବନ୍ଦ ହୋଇଗଲା—ବର୍ଷା ଯୋଗୁ ; କଦଳୀ କାନ୍ଧଟା ମଂଜିଆ ପଡ଼ିଲାରୁ ଗରାଖ ନେଲେନି—ହାତରୁ ବାଜିଲା; ଶୀତ ଋତୁ ଯୋଗୁ କାଗେଜି ଲେମ୍ବୁର ବିକ୍ରି କମିଗଲା—ଆଠଅଣା ପଇସା ମାତ୍ର ରୋଜଗାର, ···ଏମିତି ଯାହାର ଯେତେବେଳେ ଦରକାର ପଡ଼ିଲା, ରଜାଦାଦା ଦିଏ ଏବଂ ବଳକା ରୋଜଗାର ବେଳେ ସେ ଛଡ଼େଇନିଏ ଯାଚକରି ନଦେଲେ । କେହି କାହାକୁ ଅଶ୍ଳୀଳ ଇଙ୍ଗିତ କଲା, କିମ୍ବା କେହି ଅନ୍ୟ ସାହି ବସ୍ତିରୁ ଆସି ଏଠି ଯଦି ଦାଦାଗିରି ଦେଖାଇଲା, ତା'ର ପାଉଣା ଦେବାକୁ ସେ ସାଙ୍ଗେ ସାଙ୍ଗେ ହାଜର ହୋଇ ଯାଉଥିଲା ।

ରଜାଦାଦା ସବୁ କିଛି କରିପାରୁଥିଲା—

ସମସ୍ତେ ତାକୁ ଜାଣିଥିଲେ, ଡରୁଥିଲେ···

ସମସ୍ତେ ତାକୁ ମାନୁଥିଲେ ।

କିନ୍ତୁ ଗୋଟାଏ ଜନପଥ ତାକୁ ଡରେଇ ଦେଇଗଲା······

ପୋଲିସଗୁଡ଼ାକ ତାକୁ ଦେଖିଲେ ସଲାମ କରନ୍ତି, ତା ସାଙ୍ଗରେ ଦୋସ୍ତି ଜମାନ୍ତି, ତା'ର ବିନା ଇସାରାରେ ବସ୍ତିର କାହାର ଦୁଆର ମାଛି ମାଡ଼ନ୍ତି ନାହିଁ। ମାତ୍ର ଏଇ କିଛି ଦିନ ତଳେ ଦେଶରେ ଗୋଟାଏ ଅଜଣା କୋଳୁଆଭୟ ଦେଖା-ଦେଇଥିଲା। ପୋଲିସଗୁଡ଼ାକ ସେତିକି ବେଳେ ଉପରମୁହାଁ ହୋଇ ଯାଇଥିଲେ; ତାକୁ ଆଉ ସଲାମ ପକାଉ ନଥିଲେ। ବସ୍ତି ଭିତରେ ସେମାନେ ପଶିଲାବେଳେ ସାମ୍ନାସାମ୍ନି ହୋଇଗଲେ ମୁରୁକି ମୁରୁକି ହସି ଦଉଥିଲେ କେବଳ।

ରଜା ଦାଦାର ହାବଭାବ ରାଗ ଚଢ଼ ଯାଉଥିଲା ସେତିକିବେଳେ। ରଜା ଦାଦା ଠିକ୍ ଡରୁଥିଲା କି ନା,ବାହାରକୁ ଜଣା ପଡ଼ୁ ନ ଥିଲା। ତଥାପି ଏହି ସମୟରେ ସେ ତା' ନିଜ ଇଲାକା ଛାଡ଼ି ବାହାରକୁ ଯାଉ ନ ଥିଲା। ପୋଲିସମାନଙ୍କୁ ଦେଖିଲେ ଅଶ୍ଳୀଳ ଭାଷାରେ ଗାଳି ଦେଉଥିଲା। ତାଂକ ଗଲାବାଟରେ ଲଣ୍ଡାଏ ଲେଖାଏଁ ଘୃଣାବ୍ୟଞ୍ଜକ ଛେପ ପକାଇ ଦେଉଥିଲା। ସେ ସମୟରେ କାହାର କିଛି ମୁକାବିଲାର ଆବଶ୍ୟକ ପଡ଼ିଲେ, ଏବଂ ସେ ରଜା ଦାଦାର ସାହାଯ୍ୟ ଲୋଡ଼ିଲେ, ରଜା ଦାଦା କହୁଥିଲା— 'ନାହିଁ ବାବୁ, ଏ ସମିଆ ବଡ଼ ଖରାପ, ମତେ ମାଫ୍ କରିବ'।

ସେଇ ସମୟରେ ରଜା ଦାଦା ବଦଳି ନ ଥିଲା; ବଦଳିଥିଲା ତା'ର ମଠଗଡ଼। କିଂବା ବଦଳି ଥିଲା ତା'ର କ୍ରିୟା କଳାପ। ସେହି ସମୟରେ କରିଥିଲା ରାଣୀହାଟ ପୋଲର ଡାହାଣ ପଟେ, କେନାଲର ପାଣି ଧାର ପାଖରେ। ଆଗରୁ ସିନେମା ଗଳି ପାଖରେ ସେ ରହୁଥିଲା ଆବର୍ଜନାପୂର୍ଣ୍ଣ ପରିବେଶରେ। ରଜାଦାଦା ତା'ର ଏଇ ନୂଆ ପଲା ନିର୍ମାଣ ପାଖରେ ଥିଲା ଦେଶୀ ମଦ ଦୋକାନଟିଏ। ରାତିର ନାଇଁଟ୍ ପହରରେ ସେଠି ମଲ୍ଲୀଫୁଲ ହାର ମିଳୁଥିଲା। ଏଠି ସେ ସୁବିଧା ସବୁ ନାହିଁ; ତେବେ ଆଉ ଅନେକ ସୁବିଧା ଅଛି।

ପଲା ଘରଟି ନୁଆଣିଆଁ ପାଣି ଧାର ଆଡ଼କୁ। ଉପର ଆଡ଼କୁ ମୁଣ୍ଡକରି ଏ ଘରେ ଶୋଇଲେ ତକିଆ ଦରକାର ପଡ଼େନି। ପୁଣି ହାତ ପାହାନ୍ତାରେ ପାଣି। ରାତିରେ କେବେ ଶୋଷ ହେଲାତ କେନାଲରୁ ଦୁଇ ଚାରି ଆଞ୍ଜୁଳା ପାଣିଆଣି ପିଇହୁଏ। ରାତିରେ ଜହ୍ନ ଉଇଁଲେ ଏଇ କେନାଲ ପାଣିରୁ ତା'ମୁହଁ ଦେଖି ହୁଏ। ଖୁବ୍ ଜୋରରେ ବର୍ଷା ହେଲେ ପାଣି ବେଳେବେଳେ ପଲା ଭିତରକୁ ପଶି ଆସେ। ସେ ପୁଣି ପନ୍ଦର କୋଡ଼ିଏ ମିନିଟ୍‌ପାଇଁ। ଶୋଇଥିଲେ ଗୋଡ଼ ଧୋଇଦେଇ ଚାଲିଯାଏ।

ପୁରୁଣା ଘରଟା ପରେ ଏ ନୂଆ ଘର।

ସେଇ ସମୟରେ ରାସ୍ତାକଡ଼ର ସବୁ ଘରଦ୍ୱାର ସରକାରୀ ଲୋକେ ଭାଙ୍ଗି ପକେଇଥିଲେ । ରାସ୍ତାକଡ଼ର ଅସ୍ଥାୟୀ ଦୋକାନମାନଙ୍କୁ ଉଜାଡ଼ି ଦେଇଥିଲେ । ରାଜାଦାଦା ଯେ ବିଦ୍ରୋହ ପ୍ରକାଶ କରି ନ ଥିଲା, ତା' ନୁହେଁ । କିନ୍ତୁ ସମୟଟା ଭଲ ନ ହେଇଥିବା ଯୋଗୁ ରକ୍ତଗରଳ ଘେରିବେଇ ରହିଥିଲା । ତା'ର ବିରାଟ ପାରିବାରିକ ଚକ୍ରର ଅସ୍ଥାୟୀ ଥଇଥାନ ବ୍ୟବସ୍ଥା କରିଥିଲା । ପରେ ସେ ଅସ୍ଥାୟୀଟା ହେଇଗଲା ସ୍ଥାୟୀ । ନୂଆ ଜାଗା ପ୍ରତି ମମତା ଆସିଗଲା । ନୂଆ ଜାଗା ଛାଡ଼ି ପୁରୁଣା ଜାଗାକୁ ଆସିବାକୁ ଆଉ କେହି ଇଚ୍ଛାକରି ନାହାଁନ୍ତି ।

କିଛି ଦିନ ହେଲା ରାଜା ଦାଦାକୁ ଗୋଟାଏ କି ଅଜଣା ରୋଗ ଧରିଥିଲା । ତା'ର କ'ଣ ହେଉଛି, ସେ କାହାକୁ କହେ ନାହିଁ । ତା ଜୀବନରେ ଖୁବ୍ କମ୍ ଥର ସେ ଡାକ୍ତର ଦୁଆର ମାଡ଼ିଥିବ । ଜୀବନ ଉପରେ ତା'ର ଅଦ୍‌ଭୁତ ଗବେଷଣା । ସେ କହେ, 'ଶଳା ! ଭଗବାନ ଧିଅ ଦେଇଚନ୍ତି ଯେତେବେଳେ, ରୋଗ ଦେବେ ନିଶ୍ଚେ, ଆଉ ରୋଗ ପେଇଁ ମଧ୍ଯ ଏ ଧିଅରେ ଔଷଧ ଖଞ୍ଜିଥିବେ ଜରୁର୍' ।

ଥରେ ଗୋଟାଏ କୋଉଠି ଟିକେ ବଡ଼ ଧରଣର ହାତାହାତି ହେଇ ଯାଇଥିଲା । ଆରପକ୍ଷ ତୀକ୍ଷ୍ଣ ହତିଆରର ଆଘାତ ପାଇଥିଲେ ସୁଦ୍ଧା ଜିତାପଟଟା ରାଜା ଦାଦା ନେଇ ଆସିଥିଲା ଏବଂ ଏ ଖବରଟା ଦେଇସାରି ସିଧା ଡାକ୍ତର ଦୁଆରକୁ ଯାଇଥିଲା । ସେଇଠି ସେ କିଛି ସମୟପାଇଁ ଅଚେତ ହେଇଯାଇଥିଲା ।

ସେଇଦିନୁ ତା' ମୁହଁର ବାଁପଟେ ଗୋଟାଏ ବିରାଟ କଟା ଚିହ୍ନ । ବାଁ ଆଖିଟା ମଧ୍ୟ ମାରି ପଡ଼ିଥିଲା । ସେଥିରେ ତାକୁ ଭଲ ଦିଶେନି । ଦୀର୍ଘ ଛ ଫୁଟିଆ ଚେହେରା ସାଙ୍ଗକୁ ବଳିଷ୍ଠ କର୍କଶ ଶରୀର । ମୁଣ୍ଡ ବାଳଗୁଡ଼ାକ ଠିଆ ଠିଆ । ସେଥିରେ ପୁଣି ବିରାଟ ମୁଣ୍ଡ । ଦେହ ତୁଳନାରେ ଖୁବ୍ ବଡ଼ । ପିଲାଦିନେ କୋଉ ଜଉତିଷ କୁଆଡ଼େ ତାକୁ କହିଥିଲା, ଖୁବ୍ ବୁଦ୍ଧିଆ ହବ ସେ । ରାଜଭୋଗ କରିବ । ଜୀବନରେ କି ଭୋଗ ସେ କରିଚି, ସେଇ ଏକା ଜାଣେ; କିନ୍ତୁ ବେଳେ ବେଳେ ତା' ନିଜ ଜୀବନର ଏଇକଥା ସେ ପରିହାସ ଗଳାରେ କହେ । ସତକୁ ସତ ସେ ରାଜା ହେଇଚି

ରାଜା ଦାଦାର ବ୍ୟକ୍ତିତ୍ୱ ସହ ଗୋଟାଏ ଜିନିଷ ଟିକିଏ ବେଖାପ୍ ଲାଗୁଥିଲା । ତାହା ହେଲା ତା'ର ଚର୍ବିଲ ଉଦର । ସେଇଟା ଏତେ ବିରାଟ ଥିଲା ଯେ, ସେ ନିଜ ଗୋଡ଼ ଆଙ୍ଗୁଠି ସବୁକୁ ଠିଆହୋଇ ଦେଖିବା ଅସମ୍ଭବ ହେଇ ପଡ଼ୁଥିଲା । ସେ କିନ୍ତୁ ନିଜ ପେଟକୁ ନେଇ ଗର୍ବ କରେ । ଏଇ ପେଟ କେମିତି ତାକୁ ଅନେକ ଆକସ୍ମିକ ବିପଦରୁ ରକ୍ଷା କରିଚି, ସେକଥା କହେ । ତଥାପି ସେଇଟା କେଜାଣି କାହିଁକି ତା' ବ୍ୟକ୍ତିତ୍ୱକୁ ଖାପଛଡ଼ା ମନେହୁଏ ।

## ॥ ଦୁଇ ॥

ଠେଲା ଗାଡ଼ି ଭିତରୁ ସେଇ ପେଟଟା ବେଶୀ ଉପୁଚି ପଡ଼ୁଥିଲା ଉପରକୁ । ଜଗୁ ତା'ର ଖୋଲା, ଅଥଚ ବିକଟ ଆଖିଗୁଡ଼ାକ ଓ ଏଇ ପେଟର ପ୍ରତିପତ୍ତିକୁ ମୋଟେ ସହ୍ୟକରି ପାରୁ ନ ଥିଲା । ବଂଚି ଥିଲାବେଳେ ଲୋକଟା ଯେମିତି ରୁକ୍ଷ ଓ ଭୟଙ୍କର ଥିଲା, ମଲାପରେ ମଧ୍ୟ ସେମିତି ଜଣା ପଡୁଥିଲା । ଜଗୁର ମନେ ହେଲା, ରଜା ଦାଦା ଯେମିତି କୌଣସି ପ୍ରସେସନ୍‌ରେ ଗାଡ଼ିରେ ବସି ଯାଉଚି, ଜଗୁକୁ ବାଧ୍ୟ କରିଚି ଠେଲି ଠେଲି ନିବାକୁ; ତା'କାମରେ ଟିକେ ଖିଲାପ ହେଲେ, ଉଠିବ, ପିଟିବ,—ବି ଚଟକଣାରେ ତା' କାନମୁଣ୍ଡା ଲାଲ୍ କରିଦେବ ।

ଜଗୁ ସେଇ ଭୟମିଶା ଉତ୍ସାହରେ ଗାଡ଼ି ଠେଲି ଠେଲି ଆଗେଇଥିଲା । ସତେ ଯେମିତି, ଗୋଟାଏ ଅଜଣା ଭୟ ତା' ପଛେ ପଛେ ଚାଲିଚି ।

ଜଗୁ ପ୍ରଥମେ ଥିଲା ତା'ର ପହିଲା ନମ୍ବର ଚେଲା, ପରେ ହେଇଗଲା ଶତ୍ରୁ । ଜଗୁ ପ୍ରତ୍ୟକ୍ଷଭାବରେ ଶତ୍ରୁ ସାଜି କେବେ ରଜା ଦାଦାକୁ ଆହ୍ୱାନ ଦେଇ ନଥିଲା । କେବଳ ଭିତରେ ଭିତରେ ଗୁମୁରି ହେଉଥିଲା, ଜଳି ଯାଉଥିଲା ସେ କୋଉ ହଜିଲା ଯୁଗରୁ । ଏବେ ଯେ ତା'ର ରାଗ କମି ଯାଇଛି, ତା' ନୁହେଁ; କିନ୍ତୁ ବାଧ୍ୟହେଇ ଏ କାମ କରିବାକୁ ହେଉଚି ।

କାଲି ରାତିରେ ଖୁବ୍ ଭଲ ଅସରାଏ ବର୍ଷା ହେଇଥିଲା । ଅନେକ ସମୟ ଧରି ଲାଗି ରହିଥିଲା ବର୍ଷା, ଠିକ୍ ଯେମିତି ଜଗୁ ମନର ଲମ୍ବିକା ଲମ୍ବିକା ଦୁଃଖର ଲହଣି ଭଳିଆ । ବର୍ଷା ପରେ ଟିକେ ଥଣ୍ଡା ପଡ଼ି ଯାଇଥିଲା । ଅନେକ ଦିନର ଗୁଳୁଗୁଳି ପରେ ଏ ସହରକୁ ଭଲ ନିଦ କାଲି ଆସିଥିଲା । ଏବଂ ସକାଳୁ ନିତିଦିନିଆ କାମିକା ପୃଥିବୀର ପ୍ରତ୍ୟେକ ଘଟଣା ନିୟମ ଅନୁସାରେ ସଂଘଟିତ ହେଇଥିଲା ।

• ଜଗୁ ତା' ମ୍ୟୁନିସିପାଲିଟି ଓ୍ୱାର୍ଡ଼ ପରିଷ୍କାର କରିଥିଲା । କାମସାରି ଘରକୁ ଫେରିଥିଲା ଠିକ୍ ବେଳେ । କିନ୍ତୁ ଏ କଥାଟା କେତେବେଳେ ମ୍ୟୁନିସିପାଲିଟି ଅଫିସରେ କାହାଦ୍ୱାରା ପହଞ୍ଚିଲା, ସେ ଜାଣେନା । ତାକୁ ହିଁ ତା ଓ୍ୱାର୍ଡ଼ର ମୁର୍ଦ୍ଦାର ଉଠାଇବାକୁ ହେଲା ।

ଗଲା ରାତିରେ ରଜା ଦାଦା ଆଖି ବୁଜିଦେଇଥିଲା ସବୁଦିନପାଇଁ । ଦିନ ହେବାର ବହୁ ବିଳମ୍ବରେ ଏ ଖବର ଜାଣିବାକୁ ମିଳିଲା । ପ୍ରଥମେ ଏ କଥାରେ ଆଦୌ ବିଶ୍ୱାସ ଆସି ନଥିଲା ଜଗୁର । ଏଡ଼େ ବଡ଼ ଦୁର୍ଦ୍ଦାନ୍ତ ଲୋକଟା କେମିତି ବା ମରିବ ସହଜେ । ଯମ ହାଙ୍ଗରେ ତ କିଚ୍ଛିଦିନ ଲଢ଼ିଥିବ । କିନ୍ତୁ କେମିତି ଏସବୁ ହେଲା ? କେହି ଜଣେ କୁଆଡ଼େ ମ୍ୟୁନିସିପାଲିଟି ଅଫିସକୁ ଫୋନ୍‌କରି କହି ଦେଇଥିଲେ । ଆଉ ତାଆରିଦ୍ୱାରା ତା' ଶତ୍ରୁର ଶବ ଉଠାଇବାକୁ ହେଲା ।

ରାଜା ଦାଦାର ଏତେ ବଡ଼ ପାରିବାରିକ ଚକ୍ରରେ ତା' ନଜର ହେଇ କେହି ନ ଥିଲେ । ଅଥଚ ସେ ଥିଲା ସମସ୍ତଙ୍କର ରକ୍ଷକ, ସମସ୍ତଙ୍କର ପରିଚାଳକ । ସେ ମରିଗଲା ପରେ ତାର ତଥାକଥିତ କୁଟୁମ୍ବର ଲୋକମାନଙ୍କର ସବୁ ଦିନିଆ କାମରେ କିଛି ବ୍ୟତିକ୍ରମ ଘଟିଲାନି, କିମ୍ବା ତା' ରାଣୀହଂସ ପୁରରୁ କାହାର କାନ୍ଦଣାର ଲହରୀ ଶୁଣା ଗଲାନି । ବରଂ ତା'ର ରାଣୀମାନଙ୍କ ଭିତରୁ କିଏ ସନ୍ତୋଷ ପ୍ରକାଶ କରିଥିବ, କିଏ ସାମୟିକ ଦୁଃଖିତ ହେଇଥିବ, କେହି ଅବା ଆଉ ଗୋଟାଏ ରାଜା ବାଛିବାକୁ ମସୁଧା କରି ସାରିବଣି ।

ରାଜା ଦାଦା କାହାର ପାଖରେ ନିଜର ବିଶେଷ କିଛି ପରିଚୟ ଛାଡ଼ି ଯାଇ ନାହିଁ । ରାଜା ଦାଦା—ବାସ୍, ସେତିକି । ତା'ର ଅତୀତର ଇତିହାସ ଏବେ ବି ଅନ୍ଧକାରାଚ୍ଛନ୍ନ । ଜଗୁ ଜାଣେ, ବସ୍ତିର ପିଲାଠୁଁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ ତାକୁ 'ରାଜାଦାଦା' ବୋଲି ଡାକନ୍ତି । ଜଗୁ ବି ସେଇଆ ଡାକୁଥିଲା । ଜଗୁର ଭଉଣୀ ସୋରିଆ ବି ସେଇଆ ଡାକୁଥିଲା ତା' ହେତୁ ପାଇଲା ଦିନୁ ।

ଫଗୁଣ ଆସିବା ପରେ ଗଛରେ ପେନ୍ଥା ପେନ୍ଥା ଫୁଲ ଫୁଟିଲା—ସୋରିଆ ସେଆଡ଼କୁ ଚାହିଁ ରହି କେଜାଣି କେତେ କ'ଣ କାମନା କଲା ।

ସୋରିଅ଼ାର ଯୋଉ ଦିନୁ ଏ ଦୁନିଆର ସେଇ ରୂପକୁ ଚହ୍ନିବାର ବୟସ ହେଲା, ରାଜା ଦାଦାର ରାଣୀଙ୍କ ସଂଖ୍ୟା ସେଇ ଦିନୁ ଗୋଟିଏ ବଢ଼ିଥିବା କଥା ଜଗୁ ଜାଣିଥିଲା ବହୁତ ପରେ । ଜାଣିବା ପରେ ଜଗୁ ଖୁସି ହେଇଥିଲା । କାରଣ ସେ ରାଜାଦାଦାକୁ ଯାହା ଆଗରୁ ଡାକି ଆସୁଥିଲା ତାହା ବାସ୍ତବ ରୂପ ନେଇଥିଲା । ମାତ୍ର ଏ ଖୁସି ବେଶୀ ଦିନ ରହିଲାନି ।

ସେଦିନ ଆଉ ଗୋଟାଏ ଘଟଣା ଘଟିଗଲା ।

ସାରା ଜୀବନ ମନେ ରହିଲା ଭଳି ଘଟଣା—

ବେଶି ଦିନ ଭଲ ଲାଗୁନି ।

ଧଇଁ ବେମାରିଆ ଧୋବା ଗୋଛେଇତ ଝିଅ ସପନୀ··· । ଖୁନ୍ଦିଲା ଖୁନ୍ଦିଲା ନିଦା-ପିଟା ଦିହଟା ତା'ର । ଜଗୁ ଆଖିରେ ରଙ୍ଗ ବୋଳି ଦେଇଥିଲା ସିଏ । ତାକୁ ନେଇ ଜଗୁ କେତେ ସ୍ୱପ୍ନ ଦେଖିଥିଲା ଦିନ ଆଉ ରାତିରେ । ସପନୀପାଇଁ ସିଏ ଉପରେ ପଡ଼ି ଧୋବା ଗୋଛେଇତକୁ କାମରେ ସାହାଯ୍ୟ କରୁଥିଲା । ଧଇଁ ପେଲିଲେ ସେ ଅଚେତହେଇ ପଡ଼ି ଯାଉଥିଲା । ଜଗୁ ତାକୁ ଦମ୍ ମାରିବାକୁ କହି ତା' କାମତକ କରି ଦେଉଥିଲା ।

ଗପ ଭଲ ଲାଗୁଚ ଏସବୁ । ସପନୀର ଦାୟିତ୍ୱ ଜଗୁ ଉପରେ ଦେବାକୁ ଧୋବା ଗୋଛେଇଡ ଏକରକମ୍ ଠିକ୍‌କର ସମସ୍ତଙ୍କୁ କହି ଦେଇଥିଲ । ସପନୀ ତା'ର ପୁଚୁକା ଗାଲରେ, ଦୁଷ୍ଟାମି ମିଶା ହସ ଝୁନ୍ଦ କେତେ ଥର ଜଗୁକୁ କହୁଚ, 'ତୁ ଯୋଉ ଦନ ଏ ବସ୍ତିର ରଜାଦାଦା ହବୁ, ସେଇଦନ ତତେ ବାହା ହେବରେ ।'

ଘଟଣାଟା ବେଶୀ ବାଟ ଆଗେଇଲାନ । କଥାଟାର ସୁରକ୍ ରଜାଦାଦା ପାଇଗଲା କୋଉ ଅଜଣା ସୂତ୍ରରୁ । ସେ ଭାବନେଲା, ଏଇଟା ତା'ପାଇଁ ଏକ ଚକ୍‌କର । ଜଗୁ ଦନେ ସକାଳୁ ଶୁଣିଲା, ସପନୀକୁ ଉଠେଇ ନେଇ ରଜାଦାଦା କାଲ୍ ରାତରୁ କୁଆଡ଼େ ଚାଲିଯାଇଚୁ । ଜଗୁର ଆଖିରୁ ଅଜସ୍ରାତ୍ର ଅନେକ ଜୁଳୁ-ଜୁଲିଆ ପୋକ ଉଡ଼ିବାକୁ ଲାଗିଲେ । ସେ କ'ଣ କରବ ଠିକ୍‌କର ପାରଲାନ । ଝିଆପିଆ ଠିକ୍-ଠିକଣା ରହିଲାନ ତା'ର । ସେ କେତେବେଳେ ରଜାଦାଦାର ପଲା ପାଖରେ ଠିଆ ହେଉଥିଲ ତ, କେତେବେଳେ ସପନୀ ଘର ଦୁଆରେ ।

ଧୋବା ଗୋଛେଇତ କହିଲା, 'ଦେଖ୍ ଜଗୁ, ପାରୁଚୁ ଯଦି କଚ୍ଛୁ କର । ମୁଁ ତ ନପାରଲା ମଣିଷ । ତେବେ ମୋର୍ ମତ, ସେମିତିଆ ଲୋକ ସାଙ୍ଗରେ ନ ଲାଗିବା ଭଲ । 'ତୋ ଇଚ୍ଛା ।

ତିନଦନ ପରେ ରଜା ଫେରଲା ସପନୀକୁ ନେଇ । ଏଣିକ ସପନୀ ତା'ର । ସମସ୍ତଙ୍କପାଇଁ ଏଇଟା ଜଣାଶୁଣା ଘଟଣା ହେଇଗଲା । ଏ ମିଠା ରଜା ଦାଦା ବହୁ ଆଗରୁ ପ୍ରଦର୍ଶନ କରଆସିଚ । ଏକଥା ଜାଣିଲେ ମଧ୍ୟ ଜଗୁ କେଜାଣି କାହିଁକ ସମ୍ଭାଳ ହେଇ ପାରଲାନ । ସେ ଧାଇଁଗଲା ଆଗ ସପନୀ ପାଖକୁ ।

ସପନୀକୁ ଯାହା ଦେଖିଲା ତା' ଗ୍ରୁଡରୁ କଆଁ ହାବୁକାଟିଏ ଉଠିଗଲା । ସପନୀ କହୁଥିବା ଶୁଣିଲା, 'ମୁଁ ତା'ର ଅଇଁଠା ରେ ଜଗୁ ! ତତେ କେତେଥର ମୁଁ କହୁଥିଲ ରଜାଦାଦା ହବାକୁ । ତୁ···, ଛି ! ଲଜ ମାଡୁନ ତତେ—ପୁଣି ମୋ ପାଖକୁ ଆସି ପାରଲୁ ? ମାଇଚଆ'······

ନଜ ସ୍ତ୍ରୀର ଇଜ୍ଜତ ଯିଏ ରକ୍ଷିପାରେ ନାହିଁ, ସେ ମାଇଚଆ ନଶ୍ଚୟ ।

କ୍ରୋଧରେ ଅଗ୍ନିରହୋଇ ଜଗୁ ଯାଇ ଠିଆ ହେଇଗଲା ରଜାଦାଦା ଆଗରେ । ଜଗୁକୁ ଦେଖି କଚ୍ଛୁ ନକହି ହସି ଉଠିଲା ରାକ୍ଷସ ଭଳି ସେ । ଜଗୁ ଯେତେ ଯେତେ ତା ପାଖକୁ ଗଲା, ସେତେ ଜୋରରେ ହସି ଉଠିଲା ସେ । ଶେଷରେ ଉଠି ପଡ଼ି ଜଗୁର ଦୁଇ ଗାଲରେ ଦୁଇଟା ବ୍ରହ୍ମ ଚାପୁଡ଼ା କଷି ଦେଲା ସେ । ଜଗୁ ଅଚେତହେଇ ପଡ଼ିଗଲା ସେଇଠି । କେହି ତା'ପାଖକୁ ଗଲେନ ସେତେବେଳେ । ଅଧଘଣ୍ଟା ବାଦ୍ ନଜେ ଜଗୁକୁ ନେଇ ସାଷ୍ଟାମ କଲା ରଜାଦାଦା ।

## ॥ ତନ ॥

ଜଗୁର ହାତ ହଠାତ୍ ନିଷ୍କ୍ରିୟ ହୋଇଗଲା । ଠେଲା ଗାଡ଼ି କିଛି ସମୟ ପାଇଁ ଅଟକିଗଲା ଗୋଟାଏ ଜାଗାରେ । ଗାଡ଼ି ଭିତରୁ ରାଜାଦାଦାର ବିକଟାଳ ମୁହଁଟାକୁ ଚାହିଁ ଦେଲା ମାତ୍ରେ, ସେଦିନର ସେଇ କଥାଗୁଡ଼ାକ ବେଶୀ ବେଶୀ ମନେ ପଡ଼ିଗଲା ତାର । କେଜାଣି କେମିତି ଜଗୁର ସାରା ଦେହରେ ତାତିଲା ରକ୍ତର ଜୁଆର ଖେଳିଗଲା । ସେ ନଇଁପଡ଼ି ରାଜା ଦାଦାର ଚର୍ବିଲ ପେଟରେ ଖୁବ୍ ଜୋର୍‌ରେ ମୁଥ୍ ମାରି ଚାଲିଲା ଏବଂ ତା'ର ରୂଡ଼ିଆ ଟାଆଁସା ଦାଢ଼ି ବଢ଼ୁଲା ଗାଲରେ ଠୋ ଠୋ କରି ଚାପୁଡ଼ା ମାରିଲା ଅନେକ ।

ପ୍ରତିଶୋଧ··· ! ପ୍ରତିଶୋଧ···

ମାରି ମାରି ହାଲିଆ ହୋଇଗଲା ସେ ।

ଦେହରୁ ତା'ର ପୁଣି ଗୋଟାଏ ଝାଳ ବହିଗଲା ଜୋର୍‌ରେ । କିନ୍ତୁ ରାଜାଦାଦାର ଗାଲକୁ ସେ ଲାଲ୍ କରି ପାରିଲାନି, ଯେମିତି ସେ କରି ଦେଇଥିଲା ତା' ଗାଲକୁ ଅନେକ ଦିନପାଇଁ ।

ଜଗୁ ମୁଣ୍ଡରୁ ନିଶା ଖସିଲା ଅନେକ ବେଳ ପରେ । ସେତେବେଳକୁ ସୂର୍ଯ୍ୟ ଅସ୍ତହେବା ଉପରେ । ଆକାଶର ଗୋଟାଏ କଣରେ ମେଘ ଖଣ୍ଡେ ଘୋଟି ଆସୁଥିଲା ରାଜାଦାଦାର ମୁହଁ ଭଳି ଗମ୍ଭୀରହୋଇ । କେଜାଣି କେମିତି ରାଜା ଦାଦାର ମୁହଁଟା ଏଥର ବଡ଼ ଅସହାୟ ମନେହେଲା ଜଗୁକୁ । ଭାରି ନିରୀହ ମନେ ହେଲା ସେ । ଆହା, ଏତେଗୁଡ଼ା ମାଡ଼ ଖାଇଲା ପରେ ଟିକିଏ ତ କିଛି କଲାନି ସେ । ଆଖି ବୁଜିଦେଲା ମାତ୍ରେ ଲୋକେ କ'ଣ ଏତେ ନିରୀହ ହୋଇଯାଆନ୍ତି !

ଏହି ସମୟରେ ଆଉ ଗୋଟାଏ ଦୃଶ୍ୟ ଆଡ଼କୁ ଜଗୁର ଆଖି ଟାଣି ହୋଇଗଲା । ଗୋଟାଏ ବୁଲାପଶୁର ଶବ ଧରି ଏକ ବିରାଟ ପଟୁଆର ମୁହାଁଇଥିଲା ମଶାଣି ଆଡ଼େ । କେତେ ସୁନ୍ଦର ସୁନ୍ଦର ଫୁଲରେ ତା'ର ଶବାଧାରକୁ ସଜେଇ ଦିଆ ଯାଇଥିଲା । ନୂଆ ଲୁଗାରେ ବିଶାଳ ବପୁକୁ ତା'ର ଢାଙ୍କି ଦିଆଯାଇଥିଲା । ତା' ଉପରେ ଫୁଲ, କେବଳ ଫୁଲ । ମଥାକୁ ତାର ସିନ୍ଦୂରିତ କରି ହୋଇଥିଲା । 'ହରିବୋଲ' ଧ୍ୱନିରେ ସହରର ରାସ୍ତା କମ୍ପୁଥିଲା । ଗାଡ଼ି ମଟର ଯିବା ଆସିବା ପ୍ରାୟ ବନ୍ଦ । ଖୋଲ କରତାଳ ନେଇ ସଙ୍କୀର୍ତ୍ତନ ହେଉଥିଲା ।

ଜଗୁ ଦେଖିଲା, 'ଏଇ ଷଣ୍ଢ ଜବରଦସ୍ତ ପରିବା ଦୋକାନରେ ମୁହଁ ପୂରାଇ ଖାଇଗଲା ବେଳେ ଯେଉଁମାନେ ନିର୍ମମଭାବରେ ପିଟୁଥିଲେ ସେମାନେ ବି ସେ ପଟୁଆରରେ ଅଛନ୍ତି । ଷଣ୍ଢ ମହାପୁରୁଷର ଯଶଗାନ କରୁଛନ୍ତି, ହରିବୋଲ

ଦଉଛନ୍ତି । ପଣ୍ଟୁଆରଟା ତାର ପାଖଦେଇ ଚାଲିଗଲା । ଜଗୁ ରାଜାଦାଦାର ଶବକୁ ଘଣ୍ଟାକଡ଼କୁ କରଦେଇ ଶୋଭାଯାତ୍ରାକୁ ଚାହିଁ ରହିଲା । ଲୋକେ ତାକୁ ଅତିକ୍ରମ କରିଗଲା ବେଳେ ନାକରେ ହାତ ଦଉଥିଲେ । କେହି କେହି ସେଇ କଳାହୋଳ ଭିତରୁ ପାଟିକରି କହି ଉଠୁଥିଲେ—'ଉଁଃ...ଦୁର୍ଗନ୍ଧ !'

ଜଗୁର ହଠାତ୍ କାହିଁକି କେଜାଣି ମନ ହେଲା, ଏ ମଣିଷଗୁଡ଼ାକ ବଡ଼ ବଜ୍ଜାତ୍ । ପଶୁଟା ତାଙ୍କ ନିକଟରେ ବଡ଼ ହେଲା—ଅଥଚ ମଣିଷଟା... । ଷଣ୍ଢଟାର ଆତ୍ମୀୟ ସ୍ୱଜନ ସାଙ୍ଗ ଏତେ ଲୋକ ବାହାରିଲେ; ଅଥଚ ଏଡ଼େ ବଡ଼ ମଣିଷଟାର ଜଣେ କେହି ବାହାରିଲେନି । ଜଣେ କେହି ତା' ପାଇଁ ଫୁଲ ମୁଠାଏ ଆଣି ଦେଲେନି ।

ଏ ଷଣ୍ଢଟା କାହାର କ'ଣ ଉପକାର କରୁଥିଲା ?

ଅନ୍ତତଃ ଶତ୍ରୁ ହେଲେ ବି ତ କହିବ,—

ରାଜାଦାଦା ଅନେକଙ୍କର ଉପକାର କରୁଥିଲା । ଥାଇପାରେ ତାର ଅନେକ ଦୋଷ ଅବଗୁଣ । ଥାଉ—

ନା, ରାଜା ଦାଦାପାଇଁ କିଛି ଗୋଟାଏ କରିବାକୁ ହେବ । ସେମାନେ ଯଦି ଷଣ୍ଢଟାକୁ ପୋଡୁଥିବେ, ଇଏ ବି ଦରପୋଡ଼ା କାଠ ସଂଗ୍ରହକରି ରାଜାଦାଦାକୁ ପୋଡ଼ିବ । ସେମାନେ ଯଦି ଷଣ୍ଢକୁ ପୋତୁଥିବେ, ଯେତେ ରାତି ହେଉ, ଇଏ ତାକୁ ପୋତିବ । ସମସ୍ତେ ଦେଖନ୍ତୁ,—ରାଜାଦାଦାର ଶତ୍ରୁ ହେଲେ ବି ଜଣେ ଅଛି । ତା ପାଇଁ ସେ କ୍ରୋଧ ପରବେଶହୋଇ କିଛି କରିଚ । ଜଗୁ ଠେଲା ଗାଡ଼ିକୁ ଠେଲିଲା ଆଗକୁ ଆଗକୁ । ହଠାତ୍ ସପନୀର ସ୍ମୃତି ତା ଆଗରେ ଆସି କାନ୍ଥ ମେଲି ଦେଲା ।

ସପନୀ କାନ୍ଦୁଥିବ

ସପନୀର ଏଣିକି କଣ ହେବ ...

ସପନୀକୁ ସେ ଗ୍ରହଣ କରିବ

ସପନୀ ତାକୁ ଆଦରିବ ତ ?

ଆଗରେ ରାତି ଏବଂ ରାତି

ଜଗୁ ଚାଲିଥିଲା ଶ୍ମଶାନ ଆଡ଼େ



# ସେଇ ଲୋକଟା

ଘଟଣାଟା କୋଉ କାଳର ।

ସେତେବେଳକୁ ମୁଁ ଅଷ୍ଟମ କ ନବମରେ ପଢ଼ୁଥାଏ ଠିକ୍ ମନେପଡ଼ୁନି । ମାତ୍ର ମଫସଲ ଗାଁର ଧୂଳିଆ-କସରା ରାସ୍ତାରେ ସୂର୍ଯ୍ୟଙ୍କୁ ଘଡ଼ି ମନେକରି ସ୍କୁଲକୁ ଗଲାବେଳେ, ସେଇ ସୁନା ଦାନ୍ତଲଗା କୁଲି-ସର୍ଦ୍ଦାରର ସ୍ମୃତି ଏବେ ବି ଠିକ୍ ମନେପଡ଼ୁଛି । ଆଜି ଆଉସବୁ ସ୍ମୃତି ଫିକା ପଡ଼ିଗଲାଣି । ମଉଳିଣ ପଡ଼ିଗଲାଣି ପହିଲି, ପ୍ରମୋଦ ଓ ମାୟାଧର ଆଦିଙ୍କର ବନ୍ଧୁତାର ନିବିଡ଼ତା । ସପନ ଭଳି ଲାଗୁଛି ଏବେ ରାସ୍ତାକଡ଼ର ସେ ଆଖୁ କିଆରି, ଶିଶିରବୋଳା ବିରି କୋଳଥର ସାବୁଜ କ୍ଷେତ୍ର, ଆଉ ପବନ ସାଙ୍ଗରେ ସୋରିଷ ଫୁଲଙ୍କର ଅଣ୍ଟା ଦୋହଲା ନାଚ ଏବଂ ଚୁରୁରୁଗୁଡ଼ିର ପାଣିଧାରରେ ଦଣ୍ଡିକଣା କେରାଣ୍ଡି ମାଛଙ୍କ ତରଙ୍ଗ ତରଙ୍ଗ ଗୃହାଣି

ସହରର ରୁଟିନ୍‌ବନ୍ଧା ଜୀବନ, ମାପ୍‌ଚୁପ୍ କଥାବାର୍ତ୍ତା ଓ ସ୍ନେହ-ପ୍ରେମ ଭିତରେ ସେସବୁ ସ୍ମୃତି ଅନ୍ତଃଶ୍ୱାସୀ ହେଇଯାଇଛି । ମାତ୍ର ନିହାତି ରୁକ୍ଷ ଓ ଅଶ୍ଳୀଳ ଜୀବନଯାପନ କରୁଥିବା ସେଇ କୁଲି-ସର୍ଦ୍ଦାରଟିର ଚେହେରା ଏବେ ମଧ୍ୟ ମୋର ମନେଅଛି । ଏ ଘଟଣାଟିକୁ ଗପ କହି ସତ୍ୟ ସହ ଲୁଚକାଳି ଖେଳ ଖେଳି ହେବ ନାହିଁ । ସହରରେ ଯେତେବେଳେ ରାଜନୀତିକ ଝଡ଼ ଉଠେ; ପରାଧୀନତାକୁ ଏ ଦେଶରୁ ଦୂରେଇ ଦେଇଥିବା ଲୋକେ, କିମ୍ବା ତାଙ୍କ ବଂଶଧରମାନେ ଯେତେବେଳେ ଭୋଟ-ଭିକାରି ହେଇ ଦ୍ୱାର ଦ୍ୱାର ବୁଲନ୍ତି; ଅଥବା ସମ୍ବାଦପତ୍ରରେ ଯେତେବେଳେ ନିଜର ଅତୀତର ଗୌରବମୟ କ୍ରିୟାକଳାପପାଇଁ ନେତାଏ ବାହାସ୍ଫୋଟ ମାରନ୍ତି— ସେତିକବେଳେ ମୋର ମନେପଡ଼େ ତାଆର କଥା···

ସେଇ କୁଲି-ସର୍ଦ୍ଦାରର କଥା ।

ଲୋକଟା ଟିଙ୍ଗିଶୁଳିଆ ଆଉ ମଦୁଆ ବୋଲି ସେ ଅଞ୍ଚଳଟା ସାରା ପ୍ରଚ୍ଛର ହେଇଯାଇଥାଏ । ତାକୁ କେହି କିଛି ଗୋଟାଏ କଥା ପଚ୍ଛର ଦେଲେ ସେ

ଖେଙ୍କାର ଉଠେ; ନଇଲେ ଦେହେହାକର କ’ଣ ନାହିଁ କ’ଣ କହେ। କଥା କହିବାରେ ତା’ର ବାଗବାଇଣ ନ ଥାଏ । ବେଳେବେଳେ ତା’ର ପାଖରେ କାମ କରୁଥିବା ଲୋକଗୁଡ଼ାଙ୍କ ଉପରେ ସେ ବିଗିଡ଼ିଗଲେ ଏମିତିଆ ଭାଷାରେ ଗାଳିଗୁଲଜ କରେ ଯେ, ସେକଥା କାନ ଶୁଣିବ ନ ।

ମୋଟ ଉପରେ ଲୋକଟା କାହାରି ସାଙ୍ଗରେ ମିଶିପାରେ ନାହିଁ । ତା’ ନିଜ ସାଙ୍ଗରେ ସେ ଠିକ୍ ଭାବରେ ମିଶି ପାରୁଥିବ କି ନା ସନ୍ଦେହ। ମୁଁ ତା’ ଟିଙ୍ଗା ଗୁଣଟା ଅନେକ ଥର ଦେଖିଚି । କିନ୍ତୁ କ’ଣ କ’ଣ ହାବଭାବ ଦେଖି ଲୋକେ ତାକୁ ମଦୁଆ କହନ୍ତି ମୁଁ ଜାଣିପାରେ ନ ।

କଣା ଚମାର ଏ ଅଞ୍ଚଳର ଜଣାଶୁଣା ମଦୁଆ । ରାତିରେ ସମସ୍ତେ ଶୋଇପଡ଼ିଲା ପରେ, ସେ ଗୀତ ଗାଇ ଗାଇ ଗଲାବେଳେ ସାଇ କୁକୁରମାନଙ୍କ ସାଙ୍ଗରେ କଜିଆ କରେ । ଦିନରେ ଚାଲି ଚାଲି ଗଲାବେଳେ ତା’ ଗୋଡ଼ ଇଆଡ଼େ ସିଆଡ଼େ ପଡ଼େ, କାଦୁଅରେ ପଶି ଗୋଡ଼ ଉଠେଇ ଚାଲିପାରୁନଥିବା ମଣିଷ ଭଳି । କିନ୍ତୁ ଏ ସର୍ଦ୍ଦାରକୁ ତ ମୁଁ ଦିନେ ସେଭଳି ଅବସ୍ଥାରେ ଦେଖି ନାହିଁ । ଏ ଲୋକମାନେ କାହିଁକି ମଦ ଖାଆନ୍ତି ସତେ ! ବୋଉ ସବୁବେଳେ କହେ, ମଦ ଖାଇଲେ ଭଗବାନ ବିଗିଡ଼ନ୍ତି, ସେସବୁ କୁଆଡ଼େ ପାପ ଜିନିଷ ।

ମୁଁ ସେତେବେଳେ ଭାବେ, ଏ ଲୋକଟା ସାଙ୍ଗରେ ଭଗବାନଙ୍କର ଥରେ ମୁହାଁମୁହିଁ ହୋଇଯାଆନ୍ତା କି; ଭଗବାନ ସ୍ବା’ର ବଦମାସୀ ଛଡ଼େଇ ଦିଅନ୍ତେ । ଭଗବାନ ନିଶ୍ଚୟ କଡ଼ା ମିଜାସର ଲୋକ । ସମସ୍ତଙ୍କୁ ସେ ଶାସନ କରୁଛନ୍ତି । ସେ ନିଶ୍ଚେ ଆମ ବାବାଜୀ ସାର୍‌ଙ୍କ ଭଳି କଡ଼ା ହୋଇଥିବେ ।

କିନ୍ତୁ ଛବିରେ ଭଗବାନଙ୍କ ମୁହଁଟା ଭାରି ସୁନ୍ଦର ଦିଶେ—ପିଲାଳିଆ, ମାଇଚିଆ ମାଇଚିଆ । ନିଶ ଦାଢ଼ି ଜମା ନାହିଁ । ନାଟପିଲା ଭଳି ବେଶ ହୋଇଥାନ୍ତି ସବୁବେଳେ । ଫଟରେ ତାଙ୍କ ମୁହଁଟା ଆମ କ୍ଲାସ ଗୋପିଆ ଭଳିଆ ଦିଶେ ।

ଗୋପିଆଟା ‘ବୁଦ୍ଧୁ ମାଇଚିଆ’ ବୋଲି ସମସ୍ତେ କହନ୍ତି । ତା’ ମୁହଁଟା ଝିଅ ମୁହଁପରି ଦିଶେ । ପ୍ରମୋଦ ଓ ମାୟାଧର ହେରିକା ତାକୁ ଥଟ୍ଟା କରନ୍ତି ବେଶି । ପ୍ରମୋଦଟା ଆମ ଭିତରେ ଗୋଟାଏ ଗଜା ମରଦ ଭଳି ଦେଖାଯାଏ । ଏଣେ ବି ଗୁଣ୍ଡା ପ୍ରକୃତିର । ଝିଅମାନେ ତାକୁ ଭାରି ଡରନ୍ତି । ପୁଅ ପିଲାଗୁଡ଼ିକୁ ଡରେଇ ଚେଲା କରି ରଖିଥାଏ ।

ଥରେ ସେ କ୍ଲାସରେ ସମସ୍ତଙ୍କ ଆଗରେ ଗୋପିଆ ମୁହଁକୁ ଜୋର୍‌ରେ ଚୁମି ଦେଲା । ମାଲେ, କି ବଜାର ! ସମସ୍ତେ କୁହାକୁହି ହେଲେ, ଏଇଟା ଅସନା କଥା । ଝିଅମାନେ ତ ବେଶି ଫୁସୁରୁ-ଫାସର୍ ହେଲେ । (ସେ ଗୋପିଆ ଏବେ କୋଉଠି

ଯାଇ ଗୋଟା ବଡ଼ ଅଫିସର ହୋଇଛ । ହରିଜନ କୋଟାରେ ଭାଇଁ ସେ ଚାକିରୀଟା ମିଳିଛି । ବନ୍ଧୁ , ଏ ଲେଖାଟା ଯଦି କେବେ ଆଖିରେ ପଡ଼େ, ମନଦୁଃଖ କରିବ ନା । କାରଣ ମୁଁ ଚରିତ୍ର-ସଂହାର କରିବାକୁ ଯାଇନାହିଁ । )

ହଁ, କଥାଟା କେମିତି କେଜାଣି ବାବାଜୀ ସାର୍‌ଙ୍କ କାନକୁ ଗଲା । ସେ ଆସି ପ୍ରମୋଦକୁ ସମସ୍ତଙ୍କ ସାମ୍ନାରେ ଭୁଡ଼ୁଏ ପିଟିଲେ । ସେ ଆଗରୁ ପ୍ରମୋଦ ଉପରେ ଭୁଚ୍ଛାଟାକୁ ବଗିଡ଼ନ୍ତି; ପାଠ ପଚାରି ଗାଳି ଦିଅନ୍ତି । ଝିଅମାନଙ୍କର ବାବାଜୀ ସାର୍‌ଙ୍କ ସାଙ୍ଗରେ ଭଲ ପଡ଼େ । ସେ ତାଙ୍କମାନଙ୍କ କଥା ଶୁଣନ୍ତି ଖୁବ୍ । (ବଡ଼ ଦୁଃଖର କଥା, ବାବାଜୀ ସାର୍ ଏବେ ସନ୍ନ୍ୟାସ ଆଚରଣକରି ଘର ଛାଡ଼ି ଦେଇଛନ୍ତି । ) ପ୍ରମୋଦ ମାଡ଼ ଖାଇଲା ସିନା, ଝିଅମାନେ ପ୍ରକାଶ୍ୟରେ ଖୁସି ହୋଇପାରିଲେ ନାହିଁ । କାରଣ ସେମାନେ ଜାଣିଥିଲେ ଯେ, ହସିଲେ ବା ଖୁସି ହେଲେ ପରେ ପରିଣତି ଭୟାବହ ହେବ ।

ପ୍ରମୋଦଟା ଏଡ଼େ ବେହିଆ, ମାଡ଼ ଖାଇସାରିଲା ପରେ ଖୁବ୍ ହସିଲା । ତା' ହସ ଦେଖି ସମସ୍ତେ ହସିଲେ । ଝିଅମାନେ ବି । ସେମାନଙ୍କ 'ହସ' ଦୁଃଖର କି ସୁଖର, କିଏ ଜାଣେ ' ପ୍ରମୋଦ ବାବାଜୀ ସାର୍‌ଙ୍କ ନାଁ ନ ଧରି ଗାଳିଗୁଲଜ କରେ । ଛିଃ, ଗୁରୁଜନଙ୍କୁ କ'ଣ ଏମିତି ଗାଳିମନ୍ଦ କରନ୍ତି ? ପାପ ହବ । ମନେ ମନେ ଏକଥା ଭାବେ ମୁଁ ।

ପ୍ରମୋଦ ଆହୁରି କେତେ କ'ଣ କହେ, ମୁଁ ବୁଝିପାରେ ନା । ଝିଅମାନେ କିନ୍ତୁ ବୁଝି ଯାଆନ୍ତି । ସେମାନଙ୍କର ବୋଧେ ଆଗ ବୁଦ୍ଧି ହୁଏ । ପ୍ରମୋଦ କହିଲା-ବେଳେ ସେମାନେ ତଳକୁ ମୁହଁକରି ବସି ଭିତ୍ତିରୁ ଭିତରେ ହୁଅନ୍ତି,—ଅବଶ୍ୟ ଚୁପିଚୁପିକା ।

ମୁଁ ସ୍କୁଲକୁ ଗଲାବେଳେ ସେ ଲୋକଟାକୁ ଦେଖି ଭାବେ, ଇଏ ଦିନେ ବାଛାଜୀ ସାର୍‌ଙ୍କ ହାତରୁଡ଼େ ପଡ଼ନ୍ତା କି !—ସ୍ୟା ଢଙ୍ଗ ଛାଡ଼ ଯାଆନ୍ତା ! ତାଙ୍କୁ ଯିଏ ଗାଳିଦଉ ପଛେ, ଠିକ୍ ଜାଗାରେ ସେ ସାବାଡ଼ କରିଦିଅନ୍ତି । ଗୋଟା ଗୋଟା ଲୋକ କାହିଁକି ଏମିତି ହୁଅନ୍ତି କେଜାଣି ! ଭଗବାନ ଏମାନଙ୍କ ଉପରେ ଜମା ଖୁସି ହଉ ନ ଥିବେ ।

ବୋଉ ନଇତି ପୁରାଣ ପଢ଼େ; ଭଗବାନଙ୍କ କଥା କହେ । ଭଗବାନ କୁଆଡ଼େ ଦୁଷ୍ଟଲୋକଙ୍କୁ ଜମା ଭଲ ପାଆନ୍ତି ନାହିଁ । ତା' ହେଲେ ତ ସେ ଗୋପିଆକୁ ବେଶି ଭଲ ପାଉଥିବେ—ପ୍ରମୋଦକୁ ଜମା ଭଲ ପାଉ ନ ଥିବେ । ଛାଡ଼ ' ମତେ ପଛେ ଭଗବାନ ଭଲ ନ ପାଆନ୍ତୁ—ମୁଁ ଗୋପିଆ ଭଳିଆ ହେବି ନା । ସମସ୍ତେ ଚିଡ଼େଇବେ ଏମିତି । ବରଂ ପ୍ରମୋଦ ହୋଇ ମାଡ଼ ଖାଇବା ଭଲ ।

ଏ ଲୋକଟାକୁ ତ ଭଗବାନ ବି ଭଲ ପାଉ ନ ଥିବେ । ଇଏ ସଦାବେଳେ ଅଭଦ୍ର ଭାଷା କହେ । ଥରେ ମୁଁ ଅଭଦ୍ର ଭାଷା କହି ଦେଇଥିଲି ବୋଲି ବୋଉ ମତେ ମାଇଲା ଖୁଉବ୍ । ଶେଷରେ ବୁଝାଇ ସୁଝାଇ କହିଲା, ଭଲ ମଣିଷମାନେ ଅଭଦ୍ର କଥା କହନ୍ତି ନାହିଁ । (ବୋଉ ! ତୋର ସକାଶେ ଜୀବନରେ ତରକୁଲା ମଣିଷଟିଏ ହୋଇ ରହିଗଲି । ପାପ-ପୁଣ୍ୟର ଦୋ-ଛକରେ ଠିଆହୋଇ ଜୀବନରେ ବହୁତ କିଛି ହରେଇଲି । କିଛି ଗୋଟାଏ ନୂଆ କରିବାର ପ୍ରେରଣା ମୋ ଭିତରୁ ହଜିଗଲା । ମୁଁ ଆଜି ଭାବୁଛି, ଆମ ଦେଶର ମାଆମାନେ ଅନ୍ତତଃ ତୋ ଭଳି ନ ହୁଅନ୍ତୁ । )

ସର୍ଦ୍ଦାର ନାଁରେ ଥରେ ଆଉ ଗୋଟାଏ କଥା ପ୍ରଘଟ ହୋଇଥିଲା । କେତକୀକୁ କୁଆଡ଼େ ଇଏ ରାତିରେ ଶିଖେଇ ନେଇଯାଏ ତା' ପାଖକୁ । ତାକୁ ବହୁତ ପଇସାପତ୍ର ଦିଏ । କିଛି ଦିନ ତଳେ କେତକୀ ଗୋଟାଏ ନୂଆ ଶାଢ଼ୀ ପିନ୍ଧିଥିଲା । ସେ ଶାଢ଼ୀଟାକୁ ଇଏ ହାଟରୁ କିଣିଥିବାର ଲୋକେ ଦେଖିଛନ୍ତି । ତେଣୁ ସମସ୍ତେ ଜଗିଛନ୍ତି, କେତକୀ ରାତିରେ ଗଲେ ତାକୁ ଧରିବେ; ଅଖଡ଼ାରେ ପକେଇବେ । କେତକୀ କିଣା ଚମାରର ବିଧବା ଭଉଣୀ । କେତକୀ ସାଙ୍ଗରେ ସମ୍ପର୍କ ରଖିଚି ବୋଲି ବୋଧହୁଏ ଲୋକେ ତାକୁ ମଦୁଆ କହନ୍ତି । କେଜାଣି କ'ଣପାଇଁ ଏମିତି କହନ୍ତି ମୁଁ ବୁଝିପାରେ ନାହିଁ ।

ମୁଁ ସେତେବେଳେ ଭାବୁଥିଲି, କେତକୀ ବି କେମିତିଆ ମାଇକିନିଆଟା କେଜାଣି ! ସେ ତ ଦିନରେ ସବୁ ଆଡ଼େ ବୁଲେ, ସେ ଦିନ ସମୟରେ ଯ୍ୟା ପାଖକୁ ଗଲେ ଚଳନ୍ତାନି ! ରାତିରେ ଏ ଲୋକଟା ପାଖକୁ କାହିଁକି ଆସେ ? ରାତିରେ କିଏ କୁଆଡ଼େ ଗଲେ କ'ଣ ଖରାପ ହୋଇଯାଆନ୍ତି ? ଲୋ ମା ' ଆଉ ଏଣିକି ଡେରି କରି ସ୍କୁଲରୁ ଫେରିବି ନି । ସ୍କୁଲ ଛୁଟି ହେଲା ମାତ୍ରେ ଘରକୁ ପଳାଇ ଆସିବି । ଡ୍ରେଣିକି ସାଙ୍ଗମାନେ ସବୁ ଆସନ୍ତୁ ବା ନ ଆସନ୍ତୁ । ଅନ୍ଧାର ହୋଇଗଲେ କାଳେ ମୁଁ ଖରାପ ହୋଇଯିବି ।

ସେଦିନ ପ୍ରମୋଦ ସହିତ ସ୍କୁଲରୁ ଫେରୁଥାଏ ଘରକୁ । କ'ଣ ଗୋଟାଏ ପର୍ବପାଇଁ ସ୍କୁଲ ଅଧାଛୁଟି ହୋଇଯାଇଥାଏ । ଲୋକଟା ନଈକୂଳ ପାଖରେ ବନ୍ଧ କାମ କରୁଥିଲା ତା' ଲୋକମାନଙ୍କ ସାଙ୍ଗରେ । ଆମ ଅଞ୍ଚଳର ପ୍ରାୟ ସବୁ ଲୋକ ତାକୁ 'ସର୍ଦ୍ଦାର' ବୋଲି ଡାକନ୍ତି । କୁଲିମାନଙ୍କ ସାଙ୍ଗରେ ସେ ନିଜେ କାମ କରେ ଏବଂ ପଇସା ଦେଇ ଲୋକମାନଙ୍କୁ କାମ କରାଏ ।

ସୁଦୂର କୋଉ ମାଳଅଞ୍ଚଳରେ ତା'ର ଘର । ଗାଁଲୋକଙ୍କ ସାଙ୍ଗରେ ସେ ଆଜୁରୁ-ବାଜୁରୁ ଗପ କରେ ନାହିଁ । ଲୋକେ ତା' ସ୍ୱଭାବ ଜାଣିଗଲା ପରେ ଆଉ

କେହି ଗପ ଜମେଇବାପାଇଁ ଆସନ୍ତି ନାହିଁ । ତେଣୁ କଏ ତାକୁ କହେ ଟିଙ୍ଗିଶୂଳିଆ, କଏ କହେ ବଦରାଗୀ; ପୁଣି କଏ କହେ ରସହାଣ୍ଡି ।

ହଠାତ୍ ବନ୍ଧ ପାଖରେ ପହଞ୍ଚି ପ୍ରମୋଦ ମତେ କହିଲା, ଚାଲ ଆଜି ସର୍ଦ୍ଦାର ପାଖକୁ ଯିବା । ପ୍ରମୋଦର ସାହସ ବେଶି । ମତେ କିନ୍ତୁ ଡର ମାଡୁଥାଏ । ମୁଁ ମନା କରୁଥିଲି । ସେ ବାଧ୍ୟକରି ଟାଣିନେଲା ସେଠିକି । ଆମେ ଦେଖିଲୁ, ସର୍ଦ୍ଦାର ଆମ ଆଡ଼କୁ ନଜର ରଖି ନାହିଁ । ସେ ସିଆଡ଼େ କାମରେ ବ୍ୟସ୍ତ । ଖଣ୍ଡେ ଦୂରରେ କେତେ ଧାଇଁଥିଲେ ଛେଳି ପଛରେ । ଛେଳି ଗୋଡ଼େଇଲା ବେଳେ ସେ ଏକବାରେ ଅଧାଲଙ୍ଗଳା ।

ଇସ୍, କି ଅସନା ଦିଶୁଥାଏ ସେ । ଛିଣ୍ଡା ଲୁଗାଟାକୁ ଗୋଟାଏ ହାତରେ ଗୁଡ଼ ଉପରେ ଚାପି ରଖି ଆଉ ହାତରେ ଗୁଞ୍ଜ ଖଣ୍ଡେ ଧରି ସେ ଧାଇଁଥାଏ । ସତରେ ଛିଣ୍ଡା ଲୁଗା ଭିତରେ ତା' ଦେହ ଲୁଚୁ ନ ଥାଏ । ସେ ଅସନା ଦୃଶ୍ୟକୁ ଆହୁରି ଅସନାକରି ପ୍ରମୋଦ କହି ଉଠିଲା, ହେଇ ଦେ, ତା' ଫିଙ୍ଗିଂ ଦିଶିଲା ଦିଶୁଚି ।

ମୁଁ ପ୍ରମୋଦ କଥାକୁ ମୋଟେ ହଜମ କରିପାରୁ ନ ଥିଲି । କିନ୍ତୁ ତାକୁ କହି ପାରୁ ନ ଥିଲି କିଛି । କାରଣ ତା'କଥାରେ ଅମତ ହେଲେ କୁନ୍ଦଦେବ ଦ'ଟା । ମୁଁ ତା' କଥାକୁ ନ ଶୁଣିଲା ଭଳି ହେଇ ଚାହିଁଥିଲି ସର୍ଦ୍ଦାର ଆଡ଼କୁ ।

ସର୍ଦ୍ଦାର କାମ ବନ୍ଦ କରିଦେଇ ଠିଆ ହେଇଥିଲା । ତା' ଆଖି ସ୍ଥିର ଥିଲା କେତେ ଉପରେ । ସେ ସେହି ଆଡ଼କୁ ଚାହିଁ ଭାବୁଥିଲା କେତେ କ'ଣ । ଶୁଆନଈ ଲଟା ଉପରେ ପାକଲା ଏଣ୍ଡୁଅ ବସି ମୁଣ୍ଡ ଝୁଙ୍କାଉଲା ଭଳି ସେ ମୁଣ୍ଡ ହଲଉଥିଲା । ସେ ଏମିତି ମୁଣ୍ଡ ହଲଉଥିଲା ଯେ, ଦେଖିଲେ ମନେ ହେବ—ଏନ୍ ସି ସି ପିଲାମାନଙ୍କୁ ଯେମିତି ସେ ତାଲଦେଇ ପରେଡ୍ କରଉଚି । ତା'ପରେ ହଠାତ୍ ପୁଣି ସ୍ଥିର ।

ଆମେ ତା' ପାଖରେ ପହଞ୍ଚି ଯାଇଥିଲୁ ଭୟ ଓ ଆଶଙ୍କାକୁ ସାଙ୍ଗକରି । ଛଇଗୁଡ଼ିଆ ପଞ୍ଝାହତା ମର୍ଦ୍ଦ ସେ । ବୟସ ଠିକ୍ କେତେ ହବ ଜାଣି ହଉ ନ ଥାଏ । ତେବେ ଖୁବ୍ ଜୋରଦାର୍ ଲୋକ । ପିନ୍ଧିଥାଏ ଖଣ୍ଡେ ମାଟିଆ ଫୁଲପେଣ୍ଟ ଏବଂ ଆଉ ଖଣ୍ଡେ ମାଟିଆ ହାଫ୍ସାର୍ଟ । ସାର୍ଟଟା ପେଣ୍ଟ ଭିତରେ ପଶି ପିନ୍ଧା ହେଇଥାଏ । ମୁହଁରେ ହସିଲେ ବାଘୁଆ ଦିଶେ । ଆଖି ଦି'ଟା ଭିତର ବାଲେଇ ଆଖି ଭଳି ଜଳଲ-ଜଳଲ ।

ଲୋକଟା ଆଗ କଥାବାର୍ତ୍ତା କଲା ଆମ ସାଙ୍ଗରେ ।

ସେତେବେଳକୁ କେଉଁ ପ୍ରସଙ୍ଗ ବାବରେ ଏତେ ପ୍ରଚ୍ଚୁର ହୋଇ ନ ଥିଲା । ମୋଟ ଉପରେ ସେକଥା ମୋ କାନରେ ବାଜି ନ ଥିଲା । ସେକଥା ଜାଣିଥିଲେ ମୁଁ ତା ସାଙ୍ଗରେ କଥାବାର୍ତ୍ତା କରିଥାନ୍ତି କି ନା ସନ୍ଦେହ । ପ୍ରମୋଦ ଆଗରୁ ଖୁବ ସାହସ କାଢୁଥିଲା । ମାତ୍ର ସେ ଆମ ଆଡ଼କୁ ଚାହିଁଦେଲା ମାତ୍ରେ ପ୍ରମୋଦର ପିଲେହି ପାଣି । ମୁଁ ତ ସହଜେ ଡରକୁଳା । ଭୟରେ କାଠଭୂତ୍ । ସେ ଆମକୁ ଚାହିଁ ପଚାରିଲା, କଣ୍ ଜବାନୋ, ଇସ୍କୁଲ୍ ଛୁଟି ?

ମୋ ପାଟିରୁ ତ ସହଜେ କଥା ବାହାରୁ ନ ଥିଲା ।

ପ୍ରମୋଦ ସାହସ ବାନ୍ଧି କହିଲା, ଆଜି ଓପା ସ୍କୁଲ୍ ଅଧାଛୁଟି ।

ସର୍ଦ୍ଦାର କହିଲା, ହଉ ଭଲ । ଘରକୁ ଯାଅ । ଠାକୁର ପୂଜା ଗ୍ଭଡ଼; ପେଟ ପୂଜାକର । ତାକତ୍ ଜମାଅ; ସଇତାନ୍ ସାଙ୍ଗରେ ଲଢ଼ । ଭଗବାନ ଠାକୁର କିଛି ନୁହଁ । ସିଏତ ଅଧା-ଲଙ୍ଗଳା ହୋଇ ବୁଲୁଚ, ପିନ୍ଧା କନା ଖଣ୍ଡିଏ ନାହିଁ ।

ମୋ ପାଟିରୁ ଅକସ୍ମାତ୍ ବାହାରି ପଡ଼ିଲା, ସିଏ କାହିଁକି ଭଗବାନ ହବ ମ ! ସିଏ ତ କେଉଟ; ମଦୁଆ କିଣା ଚମାର ଭଉଣୀ । କଣାକୁ ଭଗବାନ ମୋଟେ ଭଲ ପାଆନ୍ତି ନ । ତୁମକୁ ବି ଭଗବାନ ଜମା ଭଲ ପାଆନ୍ତି ନ ଯେ ! ତମେ ତ ସବୁବେଳେ ଅଭଦ୍ର କଥା କୁହ ।

ମୁଁ ଏକାନିଃଶ୍ୱାସରେ ଏତେ ଗୁଡ଼ାଏ କଥା କହି ସାରି ଦେଇଥିଲି । ମାତ୍ର ପରମୁହୂର୍ତ୍ତରେ ତା' ମୁହଁକୁ ଚାହିଁ ଡରି ଯାଇଥିଲି । ଲୋକଟା ତ ସହଜେ ବଦ୍‌ରାଗୀ । କାଳେ ଗୋଟାଏ ବ୍ରହ୍ମ ଚାପୁଡ଼ା ପକେଇବ

କିନ୍ତୁ ଏହାରି ଭିତରେ ଗୋଟାଏ ଅଦ୍ଭୁତ ଘଟଣା ଘଟିଗଲା ।

"ସର୍ଦ୍ଦାର" ଗୋଟାଏ ରାକ୍ଷସ ଭଳି ହୋ-ହୋ ହୋଇ ହସି ଉଠିଲା । ତା' ହସର ପ୍ରତିଧ୍ୱନି ତୋଳଲେ ନଈକୂଳିଆ ଗଛମାନେ । ତା'ପରେ ସେ ଶୂନ୍ୟେ ଶୂନ୍ୟେ ମତେ ଟେକିନେଇ ତା' କାନ୍ଧରେ ବସେଇ ଦେଲା । ମୁଁ ଚର୍‌ଚରେଇ ଉଠୁ ଉଠୁ ସେ କହୁଥିବା ଶୁଣିଲି, "ଆରେ ବାଃରେ ଜବାନ୍" । ପୁଣି ସେ ମତେ କାନ୍ଧରୁ ଓହ୍ଲାଇ ଦେଇ ଦେଇ କହିଥିଲା—'ତୁ ଥରେ ମତେ ତୋ' ଭଗବାନଙ୍କୁ ଦେଖେଇ-ଦବୁ ? ମୁଁ ତା'ସହିତ ଥରେ ମୁହାଁମୁହିଁ କଥାବାର୍ତ୍ତା କରିବି—କାହିଁକି ଏମିତି ସବୁ ଜାଲଆଡି ହଉଚ' ।

ପ୍ରମୋଦ ତ କାବା ହୋଇ ଯାଇଥିଲା ।

ମୋ କଥା ଗ୍ଭଡ଼ ।

ସର୍ଦ୍ଦାର ପୁଣି କହିଲା—ଯା, ଅଭି କାମ ବଖତ୍ରୁ ଯେବେ ସୁବିଧା ହବ, ତୋ ଭଗବାନ୍‌ଙ୍କୁ ଆଣି ସାକ୍ଷାତ କରାଇଦବୁ ।

ମୁଁ ଭାବିଥିଲି, ମତେ କୋଉଠି କାଢ଼ି ଦବ ନେଇ; ନଚେତ୍ ମାଡ଼ ମାରି ଗଧୁଆ କରିଦବ । ମୁଁ ଅବା ତାଙ୍କୁ କାହିଁକି କହିଲି ଏସବୁ କଥା । ମାତ୍ର ତା'ର ମନଖୋଲି ହସ ଆଉ ଦରଦୀ ମନର ସୂଚନା ମିଳିଲା ପରେ ଅନେକ ଆଶ୍ୱସ୍ତ ଲାଗିଲା ମତେ । ତଥାପି ଆମେ ଦୁହେଁ ଏତେ ଡରି ଯାଇଥାଉ ଯେ, ଘରେ ପହଞ୍ଚିବା ପର୍ଯ୍ୟନ୍ତ କେହି କାହାରିକୁ ପଦେ କଥା କହିନୁ ।

ଦି'ଦିନ ପରେ ମୁଁ ବୋଉକୁ ପଚାରିଥିଲି ଭଗବାନଙ୍କ କଥା—ସେ କୋଉଠି ଥାଇ ଶାସନ କରନ୍ତି ? ଆମେ ଯିନା ତାଙ୍କୁ ଫଟରେ ଦେଖୁ, ପ୍ରକୃତରେ ସେ ଥାଆନ୍ତି କୋଉଠି ?

ମୋର ଏ ପ୍ରଶ୍ନ ଶୁଣି ବୋଉ ଯାହା କହିଥିଲା, ମୁଁ ସେଥିରୁ କିଛି ଠଉରେଇ ପାରି ନ ଥିଲି । ସେ କହିଲା, 'ସକଳ ଘଟରେ ଥାଆନ୍ତି', ଓ ପୁଣି କହିଲା, 'ବୈକୁଣ୍ଠରେ ଥାଆନ୍ତି' ।

ବୈକୁଣ୍ଠ ଆମ ଘରଠାରୁ କେତେ ଦୂର, ମୁଁ ଜାଣିବାକୁ ପୁଛିବାରୁ ସେ ହସିଦେଲା । ଓଲଟା ଗାଳିଦେବା ସ୍ୱରରେ କହିଲା, ତୁ ଏତେ ପାଠ ପଢ଼ିଲୁଣି ; ଏମିତିଆ କଥା ପଚାରୁଚୁ କ'ଣ ? ଏଗୁଡ଼ା ତୁ ଜାଣିଥିବା କଥା; ମୁଁ ତତେ କ'ଣ ଶିଖେଇବି ?

ପ୍ରକୃତ କଥା । ମୋର ଅନେକ କଥା ଜାଣିବାର ବୟସ ହୋଇ ଯାଇଥିଲେ ବି ମୁଁ ଜାଣି ପାରି ନ ଥିଲି । ପ୍ରମୋଦ ଜାଣିଲା; ଆମ କ୍ଲାସ ଝିଅମାନେ ଜାଣିଲେ; କିନ୍ତୁ ମୁଁ ଜାଣିପାରିଲି ନାହିଁ । ବୋଧହୁଏ ମୋ' ଭିତରେ କ'ଣ କିଛି ଛୋଟା ଅଭାବ ରହିଯାଇଚି । ଭଗବାନ ମୋଠି କ'ଣ ଏମିତି ଅସଜ ରଖିଛନ୍ତି କେଜାଣି ।

ସେଦିନ ଭାରି ମନଦୁଃଖ ହେଲା ।

ସେହିଦିନଠୁ କାହାକୁ କିଛି ଜାଣିବା କଥା ଆଉ ପଚାରିବି ନ ବୋଲି ଠିକ୍ କଲି । କାରଣ, କାଳେ ମତେ ଗୋପିଆ ଭଳିଆ ସମସ୍ତେ ଚିଡ଼େଇବେ; ଅବା ବୁଦ୍ଧୁ ବୋଲି କହିବେ । ହେ ଭଗବାନ ! ମୋ ଭିତରେ ଯାହା ଅଭାବ ଅଛି, ମତେ ଶୀଘ୍ର ଦେଇଦିଅ' । ଆଉ କେହି କିଛି ଜାଣିବା ପୂର୍ବରୁ ମୁଁ ସମସ୍ତଙ୍କଠୁ ଅଧିକା ଜାଣିଯାଏ । ତୁମେ ବହୁତ ଭଲଲୋକ ବୋଲି ବୋଉ କହେ । ଅନ୍ତତଃ ବୋଉ କଥାଟା ସତ ବୋଲି ତୁମେ ପ୍ରମାଣ କରେଇଦିଅ ।

ଏମିତି କେତେ କ'ଣ ଭାବୁଥାଏ ମନେ ମନେ ।

ଏଥର କେତୋଟା ବିପରୀତ ଫଳ ହେଲା ।

କ୍ଲାସରେ ବୁଝି ନ ପାରୁଥିବା ପାଠ ମଧ୍ୟ ଆଉ ସାର୍‌ଙ୍କୁ ପଚାରି ନ ଥିଲି । ସ୍କୁଲରୁ ଘରକୁ ଫେରିଲାବେଳେ ତଳମୁହାଁ ହୋଇ ଟାଉଟାଉକରି ଚାଲି ଆସୁଥିଲି । କାଲେ ସର୍ଦ୍ଦାର ମତେ ବାଟରେ ଅଟକାଇ ଭଗବାନଙ୍କ ବିଷୟରେ ପଚାରିବ । ମୁଁ ଅବା କ'ଣ କହିବ ? ଏଯାଏ ତ ତାଙ୍କ ଠିକଣା ଜାଣି ପାରିଲି ନାହିଁ । ଭାବୁଥାଏ, କେତାକୁ ଧରିବାପାଇଁ ଜଗିଥିବା ଲୋକେ ଏ ସର୍ଦ୍ଦାରକୁ ଧରି ପକାନ୍ତେ କି ! ଲୋକଟା ଦୋଷୀ ପ୍ରମାଣିତ ହୁଅନ୍ତା କି ! ଭଗବାନଙ୍କ ବିଷୟରେ ତା'ର ଗୋଟାଏ ଧାରଣା ବି ହୋଇଯାଆନ୍ତା । କିନ୍ତୁ ନା— ପୂର୍ବ ଭଳି ସେ ଯେମିତି ସେମିତି । ବରଂ ଲୋକଟାର ସାମ୍ନାକୁ ଯିବାକୁ ମୋ ମନରେ ଭୟ ଜମାଟ ବାନ୍ଧିବାକୁ ଲାଗିଲା ।

ମାତ୍ର ଦିନେ ସାମନାରେ ପଡ଼ିଗଲି ।

ସାଙ୍ଗ ପିଲାମାନଙ୍କ ସହ ଫେରୁଥିଲି ସ୍କୁଲରୁ । ସର୍ଦ୍ଦାରର ପାଟି ଶୁଭିଲା ଦୂରରୁ । ସେ ସବୁ ପିଲାମାନଙ୍କୁ ଡାକି ସେଦିନ ଭୋଗ ବାଣ୍ଟୁଥିଲା । ସର୍ଦ୍ଦାର ଭୋଗ ବାଣ୍ଟୁଥିବା କଥା ଜାଣି ମତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ଭାବିଲି, ବୋଧେ ମୋ ଆଗରୁ ସେ ଭଗବାନଙ୍କ ଠିକଣା ପାଇଗଲା । ମୁଁ ଖୁବ୍ କୌତୂହଳରେ ତା' ପାଖକୁ ଗଲି । ଅନ୍ୟ ପିଲାମାନେ ଡରି ଡରି ବି ତା' ପାଖକୁ ଗଲେ । କାରଣ ତାକୁ କେନ୍ଦ୍ରକରି ସେ ଅଞ୍ଚଳରେ ଗୋଟାଏ କୋକୁଆ ଭୟ ଖେଳି ଯାଇଥିଲା । ଖଣ୍ଡେ ଦୂରରୁ ସେ ଚିହ୍ନି ପାରିଲା ମତେ । ତା'ପରେ ପାଟିକରି କହି ଉଠିଲା, ଆରେ ବାଃରେ ଜବାନ ! ସେଦିନୁ କୁଆଡ଼େ ଗାଏବ୍ । ତୋ ଭଗବାନଙ୍କ ସନ୍ଧାନ ମତେ ଦିନେ ଚିହ୍ନା କରେଇ ଦଉଥିଲୁ ପରା ?

ଏତକ ଶୁଣି ମୋ ତାଳୁକ ଶୁଖିଗଲା ।

ତେବେ ଆଜି ଏ ପୂଜା କାହାର ?

ଏବଂ ଭୋଗ ପୁଣି କାହାର ?

ମୋ ମନର ପ୍ରଶ୍ନ ମନରେ ଅଛି, ସର୍ଦ୍ଦାର ତା' ଅଧାକୁହା କଥା ଆରମ୍ଭ କଲା । କହିଲା, ତୁ ସିନା ତୋ ଭଗବାନଙ୍କୁ ଚିହ୍ନେଇ ପାରିଲୁ ନାହିଁ;—ଆ, ଆଜି ତତେ ମୋ ଭଗବାନଙ୍କୁ ଚିହ୍ନେଇ ଦେବି । ମୋ ଭଗବାନଙ୍କର ଆଜି ଜନ୍ମଦିନ । ତେଣୁ ଆଜି ମୋର ସବୁ କାମଦାମ ବନ୍ଦ । ମୋ ଭଗବାନ ମୋ'ତେ କହୁଥିଲେ,

ଦୁଃଖୀଲୋକଙ୍କୁ ସାହାଯ୍ୟ କରିବାକୁ ; ଜନନୀ ଆଉ ଜନ୍ମଭୂମିପାଇଁ ପ୍ରାଣଦେବାକୁ ; ବେଇମାନୀ ବିରୁଦ୍ଧରେ ଲଢ଼ିବାକୁ । ଦେଖ୍, ଦେଖରେ ଜବାନ୍ ମୋ ଭଗବାନଙ୍କୁ । ତାଙ୍କର ବଡ଼ ବଡ଼ ଆଖି ଦିଇଟାକୁ ଚାହିଁଦେଲେ ମନରେ କାମ କରିବାକୁ ଶକ୍ତି ଆସିଯାଏ ; କାନରେ ତାଙ୍କର କଥା ଏବେ ବି ବାଜିଯାଏ ।

ସର୍ଦ୍ଦାରର ଆଖିରେ ଆଖିଏ ଢେଉଭଙ୍ଗା ଲୁହ ।

ଆମେ ସମସ୍ତେ ଆଗ୍ରହ ସହକାରେ ସେ ଛବିଟି ଆଡ଼କୁ ନଇଁ ପଡ଼ିଲୁ । ଏଯାଏ ନୀରବରେ ଠିଆ ହୋଇଥିବା ପିଲାମାନେ ଭୁଷ୍ଟଭାଷ୍ଟ ହେଲେ । କେହି ଜଣେ ଧୀର ଚାପା କଣ୍ଠରେ କହୁଥିଲା, ମଲା, ଇଏତ ଆମ ଇତିହାସ ବହିରେ ଥିବା ଫଟ । ମୁଁ ଆଉ କିଛି ଶୁଣି ପାରୁ ନଥିଲି । ଫଟୋଟି ମୋର ବି ଅତି ପରିଚିତ । ସାମରିକ ପୋଷାକ ପିନ୍ଧା ଚେହେରା । ଆଖିରେ ଚଷମା । ଚଷମା ତଳେ ଭାରତର ସ୍ୱାଧୀନତାର ଢେଉ-ଢେଉକା ସ୍ୱପ୍ନ ।

ସେଇ ଫଟୋଟି ଆଗରେ ଧୂପ ଜଳୁଚି । ଆଗରେ ଥୁଆ ହେଇଚି ଗୁଡ଼ାଏ ମିଠେଇ । ପିଲାମାନଙ୍କୁ ସେଇ ମିଠେଇ ବଣ୍ଟା ଯାଉଚି । ସର୍ଦ୍ଦାର ପୁଣି ପାଟିକରି କହୁଚି—କୁହ ପିଲେ, 'ଆଜାଦ ହିନ୍ଦ୍ କୀ ଜୟ' ଅମର ରୁହନ୍ତୁ ଆମର ନେତାଜୀ । ଏ ଦେଶକୁ ସ୍ୱାଧୀନ କରନ୍ତୁ । ଦେଶ ସ୍ୱାଧୀନ ହେଲେ ସମସ୍ତଙ୍କୁ ରହିବାକୁ ମିଳିବ ଜାଗା, ପିନ୍ଧିବାକୁ ମିଳିବ ଲୁଗା । ଏ ଦେଶ କ'ଣ ସ୍ୱାଧୀନ ହେଲାଣି ? ନା— ସ୍ୱାଧୀନତା ଆହୁରି ବହୁ ଦୂରରେ ଅଛି

କଥା କହିବାରେ ସେ ପ୍ରଗଲ୍‌ଭ ହେଇ ଉଠିଥିଲା ।

ପିଲାମାନେ ମିଠେଇ ଖାଇସାରି 'ଜୟ' 'ଜୟ' ପାଟିକରି ଚାଲିଗଲେ । ମୁଁ ସେଇଠି ସ୍ଥାଣୁ ଭଳି ଠିଆ ହେଇଥିଲି । ହାତରେ ଧରା ହେଇଥାଏ ମିଠେଇଟି । ବଲବଲ କରି ଚାହିଁ ଦେଖୁଥିଲି ତାକୁ । ସର୍ଦ୍ଦାର ମୋ ପାଖକୁ ଆସିଲା । ମତେ ଆଗ ଥର ଭଳି କୋଳକୁ ଉଠେଇ ନେଲା । ଏଥର କିନ୍ତୁ ମତେ କାନ୍ଧରେ ବସାଇଲା ନାହିଁ । ମୁଁ ଦେଖିଲି, ସେ ମୁଣ୍ଡରେ ସିନ୍ଦୂର ଚିତା ମାରିଛି, ଅନର୍ଗଳ କଥା କହୁଚି । ତା'ର ସୁନାଖିଲିଦିଆ ଦାନ୍ତ ଦିଇଟା ଚକ୍‌ଚକ୍ କରୁଚି ।

ମୁଁ ଆଶ୍ଚର୍ଯ୍ୟ-ଚକିତ ହେଇ ସେଇ ଦାନ୍ତ ଦିଇଟାକୁ ଚାହିଁ ରହିଥିଲି ।

ସର୍ଦ୍ଦାର ବୋଧହୁଏ ଜାଣି ପାରିଲା ମୁଁ ତା ଦାନ୍ତକୁ ଚାହିଁଚି । ସେ ହସି ହସି କହି ଉଠିଲା, ମୋ ଭଗବାନଙ୍କ ନିର୍ଦ୍ଦେଶରେ ଜନ୍ମଭୂମିପାଇଁ ଯୁଦ୍ଧରେ ମୁଁ ଏ ଦାନ୍ତ ଦି'ଟାକୁ ଦାନ କରିଚି । ଆଜି ଯଦି ସେ ମୋ ଆଗକୁ ଆସି କହନ୍ତେ—ଜୀବନଟା ଦେ, ମୁଁ ଦେବାକୁ ପ୍ରସ୍ତୁତ । ଆଃ, ଆଉ ଥରେ ତାଙ୍କ ସହ ଦେଖା ହେଇଯାଆନ୍ତା କି !!

ମୁଁ ସେଦିନ ଲକ୍ଷ୍ୟ କରିଥିଲି, ସ୍ୱଚ୍ଛ ପାଣିରେ ସୁନା ରଙ୍ଗର ମାଛ ଚକ୍ ଚକ୍ କଲା ଭଳି ତା' ଆଖିରେ ଲୁହ ଟୁଳୁଟୁଳୁ ହେଉଥିଲା ।

× × × ×

କୋଡ଼ିଏ ବର୍ଷରୁ ବେଶି ହେଲାଣି ଏକଥା ।

ଆଜି ଭାବୁଚି, ସେ ସର୍ଦ୍ଦାର ସାଙ୍ଗରେ ଏବେ ଥରେ ଦେଖା ହୁଅନ୍ତା କି ମୋର । ତା' ପାଦଧୂଳି ମାଗନ୍ତି ।

ହୁଏତ ଓଡ଼ିଶାର କେଉଁ ଅଖ୍ୟାତ ପଲ୍ଲୀରେ, ନିର୍ଧୂମ ଖପରେ ସେ ଖଟୁଥିବ ତା' ଦଳବଳ ସହ; ସେଇ ବନ୍ଧ କାମ ବି କରୁଥିବ ।

ଏକଥା ନିଶ୍ଚୟ—ସେ ବଞ୍ଚିଥିଲେ କୁଲି କାମ କରୁଥିବ ପଛେ, ସ୍ୱାଧୀନତା ସଂଗ୍ରାମୀ ବୋଲି ତମ୍ବା ପଟା ଧରି ବସି ନ ଥିବ ।

# ଯଶୋଦା

ସେତକବେଳୁ ସେ କାନ୍ଦିବାକୁ ଇଚ୍ଛାକରି କାନ୍ଦିପାରୁ ନାହିଁ । ଅଥଚ ମନ ଭିତରଟା ସାରା ହାବୁକା ହାବୁକା କୋହର ବାମ୍ଫରେ ଭରିଗଲାଣି କେତେଥର । ଦୁଃଖଗୁଡ଼ାକୁ ଚାପିରଖିବା ଯେ କେଡ଼େ କଷ୍ଟ, ଯିଏ ରଖେ ସିଏ ଜାଣିଛି । ଯାଆନ୍ତା ଭଲ ଲୁହର ଯମୁନା ହୋଇ ସେଗୁଡ଼ାକ ବହନ୍ତି; ଟିକିଏ ହାଲୁକା ଲାଗନ୍ତା ।

ଏଭଳି ଅବସ୍ଥାରେ କାନ୍ଦିବାରେ ଯେଉଁ ଆନନ୍ଦ ଅଛି, ତାହା ବଚନରେ ପ୍ରକାଶ କରିହେବ ନାହିଁ । ଦାନସାରି ବାହାରେ ବସି, ସରୁଆ ନାଲିଗୋଡ଼ିଆ ରାସ୍ତାଟାକୁ ଚାହିଁ ଚାହିଁ ସେ କାନ୍ଦିବାକୁ ଚେଷ୍ଟା କରେ । କାନ୍ଦିବାର ଅପାର୍ଥିବ ଆନନ୍ଦ ପାଇବାପାଇଁ ଆକୁଳ ହୋଇଉଠିଛି ଯଶୋଦା । ନା, ସେତକ ବୋଧହୁଏ ତା' କପାଳରେ ନାହିଁ ।

ଘର ଭିତରେ ବସି ହେଉ ନାହିଁ, ବସିବାକୁ ଭଲ ଲାଗୁ ନାହିଁ । ଖଣ୍ଡିଆଟା ଯାକ ଖାଲି ଖାଲି ଲାଗୁଛି । ଗହଳି ଚହଳି ନାହିଁ, ପାଟିତୁଣ୍ଡ ନାହିଁ, କାହାରି ସାଙ୍ଗରେ କଥା ହେବାକୁ ବି ନାହିଁ । ଘର ଭିତରେ ଥିଲେ ବେଳେବେଳେ ଦିଶିଯାଏ ତା'ର ଚଳମାନ ରୂପ; ହସକୁଡ଼ା ମୁହଁ; ତୋଫା ସଜଳ ଆଖି; କଅଁଳ ନସ୍ୱାହ୍ନ ଚାହାଣି । କେଡ଼େ ଟିକେ ଟିକେ ଦୁବଳିଆ ଜିଆନାଡ଼ି ଭଳିଆ ହାତ ଦିଇଟା, ଆସି ଅଝଟ ହେଲାବେଳେ ଯଶୋଦାର ବେକ ଚାରିପଟେ ଗୁଡ଼େଇ ହୋଇଯାଏ । ସେଇ ଦୃଶ୍ୟ......

ଝୋଲ ମାରିଯାଏ ସେକଥା ଭାବିଲା ବେଳକୁ ଯଶୋଦାର । ଘର ଭିତରଟା ଶୁନ-ଶୁନିଆ ଲାଗେ । ସେଇକଥା, ସେଇକଥା ବାରଂବାର ମନକୁ ଆସେ । ତେଣୁ ସେ ପଳେଇଆସେ ବାହାରକୁ । ବାହାର ପିଣ୍ଡାରେ ବସି, କେତେବେଳେ ଅବା ଝଲ-ଝଲହୋଇ ନାଲି ଧୂଳିଆ ରାସ୍ତା କରକୁ ଆସି ସେ ଚାରିଆଡ଼କୁ ଅନାଏ । ବେଳେବେଳେ ଏମିତି ଅନେଇ ରହେ ଯେ, ଆଖିର ପଲକ ପଡ଼େନି । ତା' ଅଜାଣତରେ ତା' ପାଟି ଅଲଟ ଆଁ ହୋଇଯାଏ । ତଥାପି ସେ ସେମିତି ଚାହିଁଥାଏ ।

କେତେବେଳ ପରେ ଖୋଲାପାଟି ବନ୍ଦ ହୋଇଯାଏ ; ଆଖି ଭିତରର ପୁଅ ପୁଣି ଢ଼ୁଆଁ ଡ଼େଇଁ କରେ । ଗୁଣ୍ଡୁଚି ମୂଷାଙ୍କ କଚର ମିଚର ଶବ୍ଦ ଆଉ ଶୁଣାଯାଏ ନାହିଁ । ଦିନ ଯାଇଁ ସନ୍ଧ୍ୟା ଆସେ । ମଥୁରି ବୁଢ଼ା ଗାଈପଲ ଧରି ଘରକୁ ଫେରିଲା-ବେଳେ ଥରକପାଇଁ ବୋଧହୁଏ ହସେ ଯଶୋଦା ନିକଟରେ । ଦିନର ଶେଷ ଥରକପାଇଁ ଚୂନପନ୍ତ ଟିକକ କାଢ଼ି ପାଟିରେ· ପକାଇଲା ବେଳେ ସେ ହସେ । ସେ ହସ ବିଚିତ୍ର ରକମର; କେମିତିଆ ଗୋଟାଏ ହସ । ମୋଟ ଉପରେ ସେ ହସ କେମିତିଆ ତାକୁ କଥାରେ ପ୍ରକାଶ କରିହେବ ନାହିଁ ।

ଏଇ କେତେଦିନ ହେଲା ଯଶୋଦା ବରାବର ମଥୁରି ଗଉଡ଼କୁ ଭେଟିଚି ସେ ଗୋଠରୁ ଫେରିଲାବେଳେ । ଏବଂ ତାକୁ ଠିଆହୋଇ ରହିଥିବାର ଦେଖିଲେ, ସେଇ ପଦିଏ କଥା ସେ ପଚାରିଚି ବରାବର । "ନଟ ଫେରିଲା ମା ? ପୁଅ ଫେରିଲା······?"

ଯେମିତି କେବଳ ଗୋଟାଏ ଶୂନ୍ୟ ପ୍ରତିଧ୍ୱନି ।

ସଚରାଚରର ଜଣା ଅଜଣା ଶବ୍ଦ ଭଳି ଶବ୍ଦଟିଏ ।

ତା'ର ସେ ବିଷୟରେ କିଛି କହିବାର ନାହିଁ ।

ଯଶୋଦା କିଛି କହିପାରେନି । ମାତ୍ର ଅମାନିଆ ମୁଣ୍ଡଟା କାନ୍ଧ ଉପରେ ସ୍ଥିରହୋଇ ରହିପାରେନି । ଦୁଇଥର ଏପଟ ସେପଟ ହୋଇଯାଏ ନୀରବରେ । ମଥୁରି ବୁଢ଼ା ଗୋଟାଏ କେମିତିଆ ହସଟାଏ ହସିଦିଏ । ସତରେ, ସେ ହସଟା ବଡ଼ ବିଚକଟିଆ ଲାଗେ ଯଶୋଦାକୁ । ଅନେକ ଥର ଭାବିଲାଣି, ମଥୁରିକୁ କହିଦବ, ଆଉ ସେମିତି ନ ହସିବାକୁ । କିନ୍ତୁ କହିପାରେନି । ମୁହଁ ତା'ର ଖୋଲେନି । ପୁଣି କେତେବେଳେ ଭାବେ, ହୁଏତ ସେଇଟା ସେ ବୁଢ଼ାର ସହାନୁଭୂତିର ହସ ହୋଇ ଥାଇପାରେ ।

ସେମିତିଆ ବେଦାଗିଆ ହସଟାଏ ହସିଦେଇ, ଅଣ୍ଟାରେ ପ୍ରାୟ ସେତିକି ଉଣ୍ଡର ତେଲଚକଟା ବାଡ଼ିଟାକୁ ଭରାଦେଇ ସେ ଖୋସଣି ଖୋଲେ; ଚୂନପନ୍ତ ପାଟିରେ ପକାଏ; ଦଣ୍ଡେ ଠିଆହୁଏ । ଗାଈମାନେ ସେମାନଙ୍କ ଅଭିଜ୍ଞମତରେ ଗାଁ ଗୋହିରି ପାଖର କାହା ଫସଲ କିଆରିରେ ମୁହଁ ମାଇଲେ, ନୀରବତା ଭାଙ୍ଗି ପାଟିକରି ଉଠେ ସେ । ··· ହେ—ହେ ବଉଲୀ, ଗୋସେଇଁଖାଇ ! ଯାଉଚୁ ଯାଉଚୁ··· !

ତା'ପରେ ସେ ଚାଲିଯାଏ ।

ଏକରକମ ଧାଇଁ ଧାଇଁ ଯାଏ ।

ତା'ର ସେ ଗୁହ୍ମଳିଆ ପାଟି କିଛୁ 'ସମସ୍ୟାପାଇଁ ପ୍ରତିଧ୍ୱନି ତୋଳେ ସେଇ ନୀରବ ବାତାବରଣରେ । ତା'ପରେ ସୂର୍ଯ୍ୟ ମୁହଁଛପା ଦେବା ସାଙ୍ଗେ ସାଙ୍ଗେ ଅନ୍ଧାର କୋଉଠି ଲୁଚି ବସିଥାଏ, ଧାଇଁଆସି ଝାଉଁ ଝାଉଁକରି ସେଇ ସେଇଭଳିଆ ଯେତେସବୁ ଶବ୍ଦ ସୃଷ୍ଟି ହେଉଥାଏ, ତାକୁ ସାଉଣ୍ଟି ଘିନିଯାଏ । ଏବଂ ସବୁଆଡ଼କୁ ଚୁପ୍ କରାଇ ଦେଇଯାଏ ।

ରାତି ଆସେ ।

ରାତି ଆସିଲେ ବି ଯଶୋଦା ଶାନ୍ତି ପାଇପାରେ ନି ।

ନା ଘର, ନା ବାହାର—

କି ଦିନ, କି ରାତି—

କେବଳ ଅଶାନ୍ତି; ଅସ୍ଥିରତା !

ବୁଆଟା କୋଉ ଅକଲରେ ଏ କାମ କଲାଟି ! ଦିନେ କାଲେ ତ ସେ ସ୍ୱା କରିବାପେଇଁ କହେ ନାହିଁ । ଘରୁ ପଳେଇବା କଥାଟା ତା' ମୁଣ୍ଡରେ କଏ ପୂରେଇଲା ? କାହା ବୁଦ୍ଧିରେ ପଡ଼ି ସେ ଏ ବଦ-ସାହସ କଲା ?

ହଁ, ସେ ଦୁଷ୍ଟାମୀ କରେ । ରାଗିଲେ ହାଣ୍ଡି ମାଠିଆ ଭାଙ୍ଗେ । କେତେଥର ଏମିତି କରିଚି । ଘର ଜିନିଷପତ୍ର ବାହାରକୁ ଫୋପାଡ଼ିଦିଏ ରାଗିଲେ । କେତେଥର ବି ଏମିତି କରିଚି । ମିଛିମିଛିକା ଶୋଇପଡ଼େ ଓପାସରେ ଖାଇବନି ବୋଲି କହି । ପୁଅ ବୋଲି ତା' କଥା ନୁଚେଇବ କାହିଁକି ? କେତେଥର ଏମିତି କରିଚି ସେ ।

କିନ୍ତୁ ଘର ଛାଡ଼ିଯିବା କଥା ତ ସିଏ ସପନରେ ଭାବି ନଥିଲା । ଦିନେହେଲେ ତ ଏକଥା କେବେ ସେ କହିଥାନ୍ତା । ···କିବା କଥା ଇଏ । ଛେଳିଟା ଫିଟେଇଦେଇ ନେଇଥିଲି, ଅନେଇ ଥିବୁରେ ପୁଅ । ରାସ୍ତା ଉପରକୁ ଯେମିତି ନ ଆସେ ।

ଗର୍ଭିଣୀ ଜନ୍ତୁଟା, ସଦାବେଳେ ଘରେ ବନ୍ଧାହେଇ ରହିଲା । ଟିକେ ବୁଲାଚଲା କଲେ, ଜାଗାକୁ ଦି' ଜାଗା ମୁହଁ ମାଇଲେ, ତା' କଥା ଅଲଗା । ସିଏ ତ ପୋଷଣାହାର ପୁଅ ଭଳି । ତେଣିଆରସନ ଜନମ ଦେଇଥିଲା ଛଅଟା ଖାସିଛୁଆ । ସେଇଥିରେ ଘର ଚଳିଲା ଆଜିଯାଏ । ତାଇ କରିବାକୁ ଆମର ଅଛି କିଏ ଆଉ ଆଗପଛକୁ ।

ଭୁ ଗୋଟା ପୁଅ ଯେ, ଆଖିର ସେତିକି ତୋ ଦେଇ ହେଲାନାଇଁ । ଛେଳି ଛାଁ ଛେଳି ବୁଲିଲା । ତୋ ଛାଁ ଭୁ ବାଗୁଡ଼ି ଖେଳାଲୁ, ପୋଲା ଖାଉଥିବା କୋଉ ପିଲାଙ୍କ ସାଙ୍ଗରେ । ସେ ସତ୍ୟାନାଶିଆ ଟ୍ରକବାଲାଏ, ତାଙ୍କୁ ତ ଇନ୍ଦ୍ର ଚନ୍ଦ୍ର ଖାତିର

ପଡ଼ନ୍ତନ ଗାଡ଼ି ଧଇଲେ । ହାଁ—ହାଁ କଉ କଉ, ଦେଲୋ ଚଢ଼େଇ ଗାଡ଼ି ଛେଳାଟା ଉପରେ ଯେ—ଆହା, ବାଟି ହେଇଗଲା ବଗୃଷା ତା' ପେଟର କ୍ଷୁଆଗୁରାଙ୍କ ସାଙ୍ଗରେ । ମନ ଭିତରଟା ଯାହା ହେଲା, ଜଗନ୍ନାଥଙ୍କୁ ଏକା ଜଣା ।

ମ୍ରଣ ନାହିଁ ସେ ଟ୍ରକବାଲାଙ୍କୁ !

ଦେଖୁ ଦେଖୁ ଟ୍ରକଟା ଛୁ—

କଏ ମାତ୍ରପରଆ ଲୋକ ଅଛ ଯେ, ତାଙ୍କୁ ଅଟକେଇବ । ସେଇକବେଲକୁ ଏ ଟୋକାଟା କୋଉଠି ଥେଲା, ଆଗରେ ଆସି ଭଲେଇ ହଉଚ । ସିଏତ ରାଗକୋହ୍ଲ ବେଲ । ପଦୁଟିଏ କଡ଼ାକର କଇଚ । ମିଛ କାହିଁକ କଇବ ? ତେଇଁକ କୋଉ ଲୋକ ସେତେବେଳେ ଚୁପ୍ ହେଇଥାଆନ୍ତା ଯେ— ! ! କାନ୍ଦୁ କାନ୍ଦୁ ପାଟିକର କଇ ଉଠିଲି, ମୋ ପୋଷଣାହାର ଛେଳି ମଲା—ତତେ ଯାହା ମରଣ ନ ହେଲାରେ ନଟ ! ଆ, ଘରକୁ ଆଜ······

ମାନ ଏତକ କଥା ।

କ ଦୋଷ ଏବେ ମୁଁ କଲ ଏଇଆ କଇ । ସେତେବେଳେ କଏ 'କାଛୁ କହ୍ୱପାର ନଥାନ୍ତା, କଉତ ଭଲ ଗୁଡରେ ହାତ ଦେଇ ? ମଣିଷ ହ୍ୱସାବରେ ପୁଣି ରାଗରୋଷ ତ ଅଛୁ । ଆମେ ତ ଆଉ ଦେବତା ନୁହଁ ଯେ, ସବୁକଥା ଜାଣିପାରବା— ସବୁକଥା ସହ୍ୱିଯିବା । ଆଜକାଲକା ଦେବତା ପର୍ା ଆଉ ସହ୍ରୁ ନାହାନ୍ତ । ଟିକେ କ'ଣ ଦୋଷ ଦେଖିଲେ ସବୁ ଓଲଟା କର ଦଉଚନ୍ତ । (ଇଲେ, ଇଲେ ' ମରଣ ନାହିଁ ମତେ ' କ'ଣ ଗୁରା କଇଯାଉଚ । ହେ ଜଗନ୍ନାଥେ ! ମୋ ନଟିଆକୁ ଫେରେଇଦଅ । ତାକୁ ଶୁଭବୁଦ୍ଧି ଦଅ ।)

ଘରେ ଛେଳାଟା ନାହିଁ, ସିଏ ବୋବାଉ ଗୁଡ଼ି ଏ ଅସହ୍ୟ ନୀରବତା ଭାଙ୍ଗୁ ଥାଆନ୍ତା । ଘରେ ନଟ ନାହିଁ,—ସିଏ ଶୋଇଲେ, ଚେଇଁଲେ, କଥା କହ୍ୱଲେ, ଆନନ୍ଦ ଦଉଥାଆନ୍ତା । ଅନ୍ଧାର ଦୂର ଗାଁ ଲୁଗା-ବେପାରୀ ଭଳି ପରସ୍ତ ପରସ୍ତ ଭାଙ୍ଗକରି ନୀରବତାକୁ ବୋକସ୍ବକର ଆସିଚ । ବଡ଼ କଷ୍ଟ ଏ ନୀରବତା ।

ଆଖିରେ ନଦ ନାହିଁ ଯଶୋଦାର ।-

କ ଦନ, କ ରାତ, କାଛୁ ଗୋଟାଏ ସେ କରପାରୁନ । ଦନଯାକ ରାସ୍ତାକଡ଼ରେ ଠିଆହେଇ, ଯେତେଦୂର ଯାଏ ଆଖିପାଏ, ସେ ଗୃହିଁ ରହ୍ୱଥାଏ ନଟର ଫେରଲା ବାଟକୁ । କଳାପେଣ୍ଟ ସାଙ୍ଗକୁ ଆକାଶୀ ରଙ୍ଗର ଜାମାପିନ୍ଧ ସେ ଇସ୍କୁଲରୁ

ଫେରୁଚ ; 'ମା···ଭୋକ' କହି ଗୋଡ଼ ହାତ ଧୋଉଚ । ବହି ବସ୍ତାନି ଏଠି ସେଠି ପକେଇଦେଇ ଖାଇବା ଯାଗାରେ ବସୁଚ

ସେ ଖାଉଚ, ଖେଳୁଚ, ପଢ଼ୁଚ, ଗୀତ ବୋଲୁଚ, ଶୋଉଚ, ଦାନ୍ତ ଘଷୁଚ, ଗାଧଉଚ, ଇସ୍କୁଲ ଯାଉଚ,···ପୁଣି ଶୁଖିଲା ମୁହଁକରି ସେ ଇସ୍କୁଲରୁ ଫେରୁଚ

ନା, ସେ ଫେରନି କେତେଦିନ ହେଲାଣି ।···'ଏତେ ଡେରି କାହିଁକି ହେଲା ? ଇସ୍କୁଲ ଛୁଟି ହେଇନି କି ? ନା, ବାଟରେ କୋଉଠି କାହା ସାଙ୍ଗରେ ମିଶି ଖେଳୁଚ' ? 'ଆସୁ ଆଜି, ଆକଟକରି କହିଦେବି ପଦେ । ଆଜିଠୁଁ ସଣ୍ଣା ଶିଖେଇବାକୁ ହେବ ।' ଏକ ଛୁଆର ମାଆଠାରୁ ଦୁଃଖିନୀ ଜଗତରେ ଆଉ କେହି ନାହାନ୍ତି ବୋଧେ । ଟିକକ କଥାରେ ସନ୍ଦେହ, ଭୟ—ଛାତି ଦକଦକ ।

ଲୋକେ କୁହାକୁହି ହୁଅନ୍ତି—ବର୍ଗୀ ଆସିଲାବେଳେ ଜନପଦ ଦିନରେ ବି ନୀରବ ହେଇଯାଏ ମଶାଣିପଦା ଭଳି । ଯଶୋଦା ଏବେ ପ୍ରତି ରାତିରେ ଦେଖୁଚ, ଅନ୍ଧାର ବର୍ଗୀ ସାଜି ଆସୁଚ । ସମସ୍ତଙ୍କୁ ଡ଼ରେଇ ଚୁପକରି ଦେଇ ଯାଉଚ । ସେଇ ଅନ୍ଧାର ଓ ନୀରବତା ଭିତରେ ଛଟପଟ ହେଉଚ ଯଶୋଦା ।

ଚୁଚୁନ୍ଦ୍ରାଟାଏ କବାଟ ତଳ ଫାଙ୍କବାଟେ ଘର-ବାହାର ହେଲାବେଳେ, ତା'ର ମନେହୁଏ, ଅନ୍ଧାର ରାତିରେ ଫେରି ଆସିଲା କି ନଟ ଆଉ ! ଲାଜରେ, ଭୟରେ ଏବଂ ଭୋକରେ ଆସ୍ତେ ଆସ୍ତେ କବାଟରେ ଆଙ୍ଗୁଠି ପିଟୁଚ । କାଲେ ସେଇ ହେଇଥିବ···

ଧଡ଼କିନା ଉଠିଯାଇ କବାଟଟା ଠିଆମେଲା କରିଦିଏ ଯଶୋଦା । ନା, କେଇ ନାହିଁ । କିନ୍ତୁ ହେଇତ,—ତା'ର ମନେହୁଏ କବାଟ ପାଖରେ ଠିଆ ହେଇଥିବା କେହି ଜଣେ ଧାଇଁ ଧାଇଁ ଯାଇ ସେଇ ବହଳ ଅନ୍ଧାର ଭିତରେ ଲୁଚିଯାଉଚ ।

ନା, ସେ ନଟ ନୁହଁ ।

ନଟ ହେଇଥିଲେ ପରା ଯତୁନରୁଁ ଗୋଡ଼ର ଚପଲ ଘୋଷାରି ଘୋଷାରି ଯାଇଥାନ୍ତା । ସେଇଟା ତା'ର ଗୋଟା ଖୋଇ । ପଇସା ଦି' ପଇସା ଛଞ୍ଚି ଛଞ୍ଚି କିଛୁ ରଖିଥିଲା ଯେ, ଦିନେ ଜୋତା ଘିନିବ ବୋଲି ଅଳିକଲା । ତେଣିକି ମାଆ-ମନ ସମ୍ଭାଳା ପଡ଼ୁଚ କେତେବେଳେ । ସେତକ ପଇସା ଦେଲି । ଚପଲ ହେଲେ ଆଣିଲା । ହେଲେ କ'ଣ ହବ—ଯାଉ ସେ ପଇସା, ପଇସା କ'ଣ କା'କୁ ସର୍ଗକୁ ନବ;—

ପୁଅଟାର ଗୋଡ଼କୁ ଚପଲ ହ୍ୱଲଟା ବେଶ୍ ମାନେ । ମାପିଚୁପି ଯିଅର କଳାଭଳି ତା' ପାଦପେଇଁ କିଏ ଗଢ଼ିଥିଲା ନିଶ୍ଚେ !

ହେଇ, ନଈକୂଳ ଆଡ଼ୁ ଗୋଟାଏ କି ଚଢ଼େଇ ଅସନା କଣ୍ଠରେ ଗାଉଚି । ଖାଲି ବେବାଗିଆ ଶୁଭୁଚି ଏକା ତା' ରଡ଼ି । ନଟଟା କି ଗଉଁ ଧଇଲା ସତେ, ଏକାଟିଆ କୁଆଡ଼େ ପଳେଇଲା ? ରାତି ବିକାଳି କ'ଣ କୋଉଠି କରୁଥିବଟି ! ରାତିରେ ବାହାରକୁ ଉଠିଲେ, ମତେ ନ ଉଠେଇ ଉଠିବନି । କେତେ ଅଭିମାନିଆ କଥା ହେଲା ସତେ !

ଏଣିକି ସେ ଟୋକାକୁ ପଦେ ଯଦି କିଛି କଇଚି,—ହେଇଟି କାନମୋଡ଼ି ହେଲା—ମୋ ନାଁ ଯଶୋଦା ନୁହଁ, ବ୍ରହ୍ମଚାଣ୍ଡାଳୀ ।

ସିଏ ଏବେ ଆଁଟକୁ ଏତେ ଅଭିମାନିଆ ହେଇଗଲାଣି ବୋଲି କେମିତି ବା ଜାଣିବି ! ଛେଳିଟା ମରିଗଲା । ମରିଗଲା ତ କ'ଣ ହେଇଗଲା । ସିଏ କ'ଣ ଆଉ ମରନ୍ତାନି ଦିନେ । ମତେ କଥାଟା ନଗଦା-ନଗଦ ବାଧିଲା ବୋଲି ସିନା ପଦେ କଇଦେଲି । ତୁ ପୁଅଟା ସେଇ କଥାକୁ ଛଳକରି ପଳେଇବୁ । ଥରେ ଭାବିଲୁନି, ତୋ ଛଡ଼ା ମୋର ଆଉ କିଏ ଅଛି ? ତୋଅରି ନାଗି ସିନା ସବୁ । ତୁ ଥିଲେ କେତେ କ'ଣ ହବ ।

ମନେ ମନେ ନଟକୁ ବୁଝାଏ ସେ—

କିନ୍ତୁ ନଟ ପାଖରେ ନଥାଏ ।

କଅଁଳା ବାଛୁରି ଧାଁ-ଦଉଡ଼କରି ଯାଇ ମାଆ କ୍ଷୀର ଖାଉଥିବା ଦେଖିଲେ, —ଯଶୋଦାର ଦେହ ଶୀତେଇ ଉଠେ । ଗୁଡି କୁତୁ-କୁତେଇ ହେଇଯାଏ ଆପଣାଛୁଏଁ । ନାଭି ପଦୁଅଁରୁ କ'ଣ କେମିତିଆ ଗୋଟାଏ ଭାବ ସଞ୍ଚରି ଯାଏ ଏକବାରେ ମୁଣ୍ଡକୁ । ତାକୁ ଖାଲି ଭଲଲାଗେ ସେ ଦୃଶ୍ୟ, ସେ ଅନୁଭୂତି ।

ରାତି ଲେଉଟାଣି ବେଳେ—

ଚଢ଼େଇମାନେ ଝାକାଝାକା ହେଇ, ଦଳ ଦଳ, ଆକାଶରେ ଶବ୍ଦମାନଙ୍କୁ ବୁଣିବୁଣି ଗଲାବେଳେ, ଯଶୋଦାର ଆଖି ଅଠାଳିଆ ହେଇ ଲାଖିଯାଏ ସେମାନଙ୍କ ପଛରେ । ମନହୁଏ କହିଦବାକୁ,—ନଟକୁ ଆମର କହିଦେବ, ମୁଁ ଖାଲି ଖୋଜି ହଉଚି, ଜଲଦି ଫେରି ଆସିବାକୁ । ଯୋଉଠି ଥାଉ, ଟିକେ ଖବର ଦବ ।

ଆଉ ଠିକ୍ ସେତିକି ବେଳେ—

ମହୁମାଛି ଗୁଡ଼ାଙ୍କର କ'ଣ ହୋଇଯାଏ କେଜାଣି,—ବସା ପାଖକୁ ଆସି, ନଷ୍ଟ ବଦ୍ଧରୁ କ'ଣ ମନେ ରଖିବାକୁ ଚେଷ୍ଟା କଲାବେଳେ ଗୁଣୁଗୁଣୁ ହଉଥିବା ଭଳି, ସେମାନେ ଗୁଣୁଗୁଣୁ ହୁଅନ୍ତି । ଭାରି ଭଲଲାଗେ ସେ ବେଳଟା ।

ପୁଣି ଆଉ ଟିକିକ ଭିତରେ—

ନାଲି ଧୂଳି ଉଡ଼େଇ ସେଇ ଅଣଓସାରିଆ ରାସ୍ତାର ବାଟ-ଅବାଟକୁ ଓସାରିଆ ମନେକରି, ଫେରି ଆସନ୍ତି ମଥୁରି ବୁଢ଼ାର ହେପାଜତରେ ଥିବା ଗାଈ ପଂଝାକ । ନାଲି ଗୋଡ଼ ଉପରେ ସେମାନଙ୍କ ଖୁରୁଗୁରିକ ନଷ୍ଟର ଚପଲ ଘୋଷରା ଶବ୍ଦ ଭଳିଆ ଶୁଭେ ।

ଆଗରେ ଆସି ଠିଆ ହୋଇଯାଏ ମଥୁରି ବୁଢ଼ା ।

ତା'ର ସେଇ ପୁରୁଣା ଅପ୍ରଚଳିତ ପ୍ରଶ୍ନ···

'ପୁଅ ଫେରିଲା ମା ?'

ନିରୁତ୍ତର ଯଶୋଦା । କ'ଣ ଉତ୍ତର ଅବା ଦବ ? ସବୁଦିନର ଅଭ୍ୟସ୍ତ ଢଙ୍ଗରେ ମୁଣ୍ଡଟା ଘୂରିବା ଆଗରୁ ସେ ତାକୁ ସ୍ଥିର କରିନେଲା । ଦୃଢ଼ କରିନେଲା ମନକୁ । ନା, ସେ ଆଜି କିଛି ସୂଚନା ବି ଦେବନି ଏ ବୁଢ଼ାକୁ ;—କିମ୍ବା ତା'ର ସେ ବିଦଗିଛିଆ ହସ ସେ ଆଉ ଶୁଣିବନି । ହୋଇଥାଉ ପଛେ ସେ ସହାନୁଭୂତିର ହସ । ତା' ମନରେ ତ ସେ ହସ କଷ୍ଟ ଦଉଛି ।

ବଲବଲ କରି କେବଳ ଚାହିଁ ରହିଥିଲା ଯଶୋଦା ।

ନା, କିଛି କହିବ ନାହିଁ ସେ ।

ବୁଢ଼ା ଆଜି କିଛି ନୂଆ କାମ କରୁଛି । ସେ ଅଣ୍ଟାରେ ବାଡ଼ି ଭରାଦେଇ ଠିଆହେଲା ସତ; କିନ୍ତୁ ଚିନପଦ ନ କାଢ଼ି, କାଢ଼ିଲା ପଟେ ଚପଲ, ତା'ର ମଇଳା ଦଶଚିରା ଗାମୁଛା ଭିତରୁ । ଯଶୋଦାର ସ୍ଥିର ଆଖି ଅସ୍ଥିର ହୋଇ ଉଠିଲା । 'ଏଇଟା,···ଏଇଟା ତ···ନଷ୍ଟ ଚପଲ !'

ବିହ୍ୱଳିତ ଭଙ୍ଗୀରେ କହି ଉଠିଲା ଯଶୋଦା ।

'ନଈ ଗଣ୍ଡ କୂଳରେ ପଡ଼ିଥିଲା । ଭାବିଲି'···

ମଥୁର ବୁଢ଼ାର କଥା ଅଧା ରହିଗଲା । ଆହତା ବାଘୁଣୀ ଭଳି ଚପଲ ପଟକୁ ଭିଡ଼ି ନେଇଗଲା ଯଶୋଦା ଏବଂ ତାକୁ ଗ୍ରୀବରେ ଜାକିଧରି ପାଗଳୀଙ୍କ ଭଳି ହସି ଉଠିଲା ଜୋରରେ । ତା' ହସରେ, ଘର ବାହୁଡ଼ା ଗାଈଗୁଡ଼ାକ ରାସ୍ତା କଡ଼ର ଫସଲ କିଆରୀରୁ ଯେଉଁ କଳେ କଳେ ଫସଲ ଖାଇଥିଲେ, ତାକୁ ଗୁଡ଼ି ତରକ ଦଉଡ଼ିବାକୁ ଲାଗିଲେ । ଯଶୋଦାର ହସ ଦେଖି ହଁ-ହଁ ହେଇ କାନ୍ଦି ଆସୁଥିବା ମଥୁର ବୁଢ଼ା ସ୍ତବ୍ଧହୋଇ ତା' ଆଡ଼କୁ ଚାହିଁ ରହିଲା । ଏବଂ କିଛି ସମୟ ପରେ ତା'ର ସେଇ କାନ୍ଦୁରା ସ୍ୱରରେ ପାଟିକରି କହିଗଲା—'ଆଲୋ ହେ, ହେ ବଉଳୀ, ଗୋସେଇଁ ଖାଇ ! ଯାଉଚୁ'......

ମାତ୍ର ମଥୁର ବୁଢ଼ାର ସ୍ୱରକୁ ଚାପି ସୃଷ୍ଟି ହୋଇଥିବା ଯଶୋଦାର ହସର ପ୍ରତିଧ୍ୱନି-ଜନିତ ଶବ୍ଦମାନଙ୍କୁ ଧରି ରଖିଥିବା ଗଛ ବୃକ୍ଷମାନେ ସେପର୍ଯ୍ୟନ୍ତ ଦୋହରେଇ ହଉଥିଲେ ନିଜ ନିଜ ଭିତରେ । ବୋଧହୁଏ କିଛି ଅର୍ଥ ବାହାର କରିବାକୁ ଚେଷ୍ଟା କରୁଥିଲେ ।



# ନୀଳ-ନୀଡ଼ର ନର୍ତ୍ତକୀ

ପୁଣ୍ୟତୋୟା ଚନ୍ଦ୍ରୋତ୍ପଳାର ଆର ପାରରୁ······

ପକ୍ଷୀଟିଏ ଡ଼ାକୁଚି । ରାତି ମାଡ଼ି ଆସୁଛି । ଏକୁଟିଆ ଅଛି ସେ । ଉଚ୍ଚ ଗଳାରେ ଡ଼ାକୁଚି । ନିର୍ଜନ କୂଳ ପ୍ରତିଧ୍ୱନି ତୋଳୁଚି । ନଈର ଗମ୍ଭୀର ଗର୍ଜନ ମଉନ ହୋଇଯାଉଚି ସେ ଡ଼ାକରେ । 'କରୁଣାରେ ହେ···ଏ···ଏ···ଏ'······

ମେଘପାଣି ଘନ । ଈଶାଣ କୋଣରୁ କଳାହାଣ୍ଡିଆ ବଉଦ ଦଳ ଆକାଶ ଘୋଡ଼ିକି ମାଡ଼ି ମାଡ଼ି ଆସୁଚନ୍ତି । ସୁଲୁସୁଲିଆ ଶୀତୁଆ ପବନ ବହୁଚି । ଗୋଡ଼ ହାତ କୋଲପି ମାରି ଯାଉଚି । ଓଠକୁ ଓଠ, ଦାନ୍ତକୁ ଦାନ୍ତ ବାଜୁଚି । ପାଣି ସରସର ଦଉଡ଼ିଟାକୁ ଟେକି କଳାରେ ବାନ୍ଧୁଥିଲା କରୁଣା । ମୁଣ୍ଡ ଉପରି ଝାଂମିରେ ମେଘର ବରକୋଳିଆ ଟୋପାର ଦୁଇ ତିନିଟା ଆବାଜ ଶୁଣିଲା । କାନରେ ବାଜିଲା ଆରପଟୁ କା'ର ଘୋଡ଼ିଫଟା ଚିତ୍କାର । ବିକଳ କଣ୍ଠର ଅନୁରୋଧ । ଉପାୟହୀନ ଭଳି ଛିଡ଼ାହେଲା ସେ । କ'ଣ କରିବ ? ସଅଳ କାମସାରି ଆସିବାକୁ ଆଜି ସବୁ ବାବୁମାନଙ୍କୁ କହିଥିଲା । ସମସ୍ତେ ତ ଆସିଲେ । କିଏ ଆଉ ରହିଲା ବାକି··· ?

ଭରା ନଈ । ଘୂରି ଖାଉଚି । ମେଞ୍ଚା ମେଞ୍ଚା ଫେଣ ଧରି ଛୁଟିଚି ସେ ସାଗର ଆଡ଼େ । ଉଚ୍ଛୁଳା ଯୌବନର ବେପଥୁ ସାଜିଥିବା ଜୁଆର ସହ ସବୁ କିଛି ସେ ସମର୍ପି ଦେବ ସାଗରକୁ । ହେଲେ ପ୍ରତିଦାନରେ ପାଇବ କ'ଣ ? ଦୁନିଆରେ ତେବେ କ'ଣ ଏମିତି ଦାନ ଅଛି ଯା'ର ବି ପ୍ରତିଦାନ ନାହିଁ !!

ଉପରି ମୁଣ୍ଡରେ ପ୍ରବଳ ବର୍ଷା ହେଉଚି । ଫେଣ କହୁଚି, ପାଣି ଆହୁରି ଆସିବ । ନଈର ପେଟ ଆହୁରି ଫୁଲିବ । ଆଖି ପାଉନି ସେପଟକୁ । ଏକୁଟିଆ ମଣିଷ । ସାହସ ପାଉନି ନାହିଁ । ଏଡ଼େ ତାନେ ପବନ ବହୁଚି । ନା, ସେ ଆଉ ଯିବନି । ରହୁ କିଏ ରହିଲା । ଏତେ କରି କହିଥିଲା, ଜାଣି ଶୁଣି ଯଦି କିଏ ଉଚ୍ଛୁର କରିବ, ତେବେ କି ଦାୟୀ କିଏ !

ଦୂରରୁ ଶୁଭିଲା ସେଇ ଡାକ, ସେଇ ଆତୁର ଆହ୍ୱାନ, ବିକଳ ନିବେଦନ । କରୁଣାର ···ଏ···ଏ···ଏ···

କାନର ପରଦା କମ୍ପି ଉଠିଲା । ହୃଦୟର କେଉଁ ଅଜଣା କୋଣରେ ଟିକିଏ ଦରଦ ଜଳି ଉଠିଲା । ଆସ୍ତେ ଆସ୍ତେ ସିଏ ପୁଣି ସାରା ହୃଦୟକୁ ଆଲୋକିତ କଲା । କରୁଣା ଭାବିଲା, ଯଦି କିଏ ନୂଆ ମଣିଷ ହୋଇଥିବ !! ବିଦେଶୀ ହୋଇଥିଲେ ? ? ବିସ୍ତୃତ ଝଡ଼ ବରଷାରେ ନିଘୁଟିଆ ଯାଗାରେ ପଡ଼ି ରହିବ ସିନା । ଆହା !!!

ତେବେ କ'ଣ ଏକୁଟିଆ ପୁଅ ମୁହଁକୁ ଯିବାକୁ ହେବ ? ଘଡ଼ିଘଡ଼ି ଚମକି ଉଠୁଛି । ମସ୍ତ ଦୋହଲା ଦେଇ ପବନ ବହୁଛି । ନଈର ଥଳକୂଳ ନାହିଁ । କେଉଁଠି ଯଦି ଚୋରା ମୁହରେ ପଡ଼ି ଯିବନା, ଅକଲ ଗୁଡୁମ୍ । ନା, ସେ ଆଉ ନାଆ ଫିଟାଇବନି । ଆଜି ଘାଟକୁ ଆସିଲାବେଳେ ରଙ୍ଗ କହିଥିଲା, ବେଗି ଆସିବ । ଝଡ଼ ବରଷା ଦିନ । ବେଶୀ ଗୁଡ଼ଘାଏ ରଇବନି ।

ମାଇପି ମନ, ଭାରି କଅଁଳ । ଭାରି ସରଳ ସେ । ଟିକିଏ ବିଳମ୍ବ ସହି ପାରେନା । ଫେରିବା ବାଟକୁ ଚାହିଁ ବସିଥିବ । ଖାଇ ନ ଥିବ । କୋଳରେ ତା'ର ଦେଢ଼ମାସର ଶିଶୁ । ନାଁ ଅଇଁଠା । ଗୋଟି ଗୋଟିକରି ସବୁ ଛୁଆଙ୍କୁ ଯମ ଖାଇଲା । ଏଇଟି ତା'ର ପାଟିରୁ ଖସି ପଡ଼ିଛି । ତା'ର ଅଇଁଠା । ହେଲେ ମାସକେ ଅଧେଦିନ ତା'ର ଦିହ ଅସୁଖ ।

ଆସିଲାବେଳେ ପୁଅ ଦେହ ଖରାପ ଥିଲା । ବାନ୍ତି କରୁଥିଲା । କିଛି ଖାଉ ନଥିଲା । ଗଲେ ବଇଦ ଘରକୁ ଯିବାକୁ ହବ । ସେଥିଲାଗି ରଙ୍ଗ ଆକଟକରି କହିଛି, ସଅଳ ଆସିବ ।

ମୁରୁକେଇ ମୁରୁକେଇ ହସି ସେ କହିଥିଲା, କ'ଣ ଗୁଡ଼ଘରେ ପିମ୍ପୁଡ଼ି ଲାଗି ଯାଉଚନ୍ତି କି, ମୁଁ ସଅଳ ଆସି ହୁରୁଡ଼େଇବ ।

ଅଭିମାନ କରିଥିଲା ରଙ୍ଗ । ରାଗ ତା' ମୁହଁରେ ଅବିର ବୋଳି ଦେଇଥିଲା । ଆଖିରେ ଅଲୁହା ଭାଷା ଫୁଲିହୋଇ ଯାଇଥିଲା । ଆଶ୍ଚର୍ଯ୍ୟ ହୋଇଥିଲା କରୁଣା । ନିଜକୁ ବୁଝାଇ ପରାଜିତର ହସ ହସିଥିଲା ସେ । ଭାବିଲା, କି ଅଦ୍ଭୁତ ଶକ୍ତି ରହିଛି ଏଇଠି ! କି ମାୟା ଏଠି ଉଇଁଶି ଖେଳୁଛି ! ତା'ର ପୁରୁଷପଣିଆ ସେ ଗୃହିଣୀ ପାଖରେ ନଇଁ ପଡ଼ିଲା ।

'ଆସିବରେ ବାବା, ଆସିବ । ରାଗରେ ଏମିତି ଜଳି ଯାଆନା' । ବାସ୍ ଏତିକି···ଏତିକିରେ ସେ ଅଭିମାନ କୁଆଡ଼େ ପାଣିଫୋଟକା ଭଳି ଉଭେଇ ଗଲା ।

ହୃଦର ଆଳୁଅ ଅଭିମାନ ଅଙ୍ଗାର ଭିତରୁ ହୁତୁହୁତୁ ହୋଇ ଜଳି ଉଠିଲା । ତା' କପାଳ ଚୁମି କରୁଣା ଆସିଥିଲା ଘାଟକୁ ।

କରୁଣା କେତେ ଭଲ ଭଲ ବାବୁମାନଙ୍କୁ ପାଉ କରିଚି । କେତେ ବଡ଼ ବଡ଼ କଥା ଶୁଣିଚି । କିଏ କହେ, ଭଗବାନ ନାହାନ୍ତି । ଆକାଶରେ ସୂର୍ଯ୍ୟ ତାରା ଘୂରୁ ନାହାନ୍ତି । ପୃଥିବୀଟା ଘୂରୁଚି । ହଇ ହେ, କି ଆଶ୍ଚର୍ଯ୍ୟ କଥା ! କି ତାଜବ୍ କଥା ! ପୃଥିବୀଟା ଘୂରୁଥିଲେ ନଈପାଣି ଓଜାଡ଼ି ହୋଇ ପଡ଼ନ୍ତାନି ? ନାଆ ଓଲଟି ପଡ଼ନ୍ତାନି ?

ମିଛ କଥା । ବାବୁମାନଙ୍କର ମୁଣ୍ଡ ଖରାପ । ଗଞ୍ଜେଇ କି ଭାଙ୍ଗ ନିଶାରେ ଏକଥା ବୋଧେ କହନ୍ତି ସେମାନେ । ମାତ୍ର ଅନ୍ୟ ବାବୁମାନେ ବୁଝନ୍ତି । ଏ ପାଠପଢ଼ୁଆ ବାବୁମାନେ ସମସ୍ତେ ଏକା ଭଳିଆ କଥା କହନ୍ତି । ତଥାପି ତା' ମନରେ ପରତେ ଆସେନା ।

ଆଜି ଘାଟକୁ ଆସୁ ଆସୁ ସେଇମାନଙ୍କ କଥା ମନେ ପଡ଼ୁଥିଲା । ସେମାନଙ୍କୁ ଯଦି ଆଜି ଦେଖିଥାନ୍ତା, ତେବେ ପଚାରି ଆନ୍ତା, ଏ ମାଇପି ଜାତଠୁଁ ମରଦମାନେ ଏତେ ଫରକ କାହିଁକି ? ତାଙ୍କ ଦେହରେ କିଏ ରୂପର କୁହୁକ ରଖିଛି ? ଭଗବାନ ଯଦି ନାହାନ୍ତି, କିଏ ତାଙ୍କ ମୁହଁକୁ ଫୁଲ ଭଳି କଅଁଳ କରିଚି ? ପୁଣି ମହକ ଭରିଚି ଏତେ ! ଆଖିରେ କାଉଁରୀ-ଅଞ୍ଜନ ମାଖିଚି କିଏ ?

ଏଥର କ'ଣ ସେ ଭଗବାନଙ୍କୁ ଅସ୍ୱୀକାର କରିବେ ? କହି ପାରିବେ ସେମାନେ, ନାଉରିଆ ନଥାଇ ଏ ସଂସାର-ନଉକା ଚାଲୁଚି କେମିତି । ମୁରବୀ ନଥାଇ ଘର ଚାଲିବ କେମିତି ! ନିଶ୍ଚୟ ଭଗବାନ ଅଛନ୍ତି । ସବୁଠି ଅଛନ୍ତି । ତା'ର ଘରେ ବି ଜନମ ନେଇଚନ୍ତି । କାନ୍ଦୁଚନ୍ତି, ହସୁଚନ୍ତି । ରଙ୍ଗ କୋଳକୁ ଆଲୋକିତ କରୁଚନ୍ତି । ରଙ୍ଗ ତାଙ୍କ ମା । ଆଉ ସେ...! ! ! ନା—ନା, ଏ ଦୁନିଆଟା ଯାକର ସେ ମାଆ-ବାପ, ହର୍ତ୍ତା କର୍ତ୍ତା ଦଇବ ବିଧାତା । ସିଏତ ରଙ୍ଗ ହାତକୁ ମୋ ହାତରେ ବାନ୍ଧିଚନ୍ତି ।

କାଆଲି ସକାଳର କଥା ।

ସପନ ଭଳି ମନେ ହେଉଚି । ସେଦିନ ଆକାଶରେ ଲାଗିଥିଲା ମୌସୁମୀ ଉତ୍ସବ । ଆକାଶ ରଜା ଝିଅ ଗୁନ୍ଦର ପୁନିଆଁ ମଉଛବ । କୁଆଁର ପୁନେଇ । ଏତେ ବଡ଼ ନେଳିଆ ଆକାଶଟାରେ କୋଉଠି କେମିତି ଖଣ୍ଡେ ଖଣ୍ଡେ ରୂପା ରଙ୍ଗର ଭସାମେଘ ଖେଳି ବୁଲୁଥିଲେ । ଏଇ ଘାଟକୂଳ । ଚୋଫା ଜହ୍ନ ଆଲୁଅ ପଡ଼ୁଥାଏ । ନାଆ ବାନ୍ଧିବାକୁ ଯାଉଚି, ଦୁଇଜଣ ଲୋକଙ୍କୁ ଦେଖିଲା ସେପଟେ ।

ଅଧା ନଈ । ଏପଟ ସେପଟ ଦିଶୁଥାଏ । ଧୋବ ଫରଫର ପୁନେଇ ଜହ୍ନରେ ସଫା ବାରିହେଇ ପଡ଼ୁଥାନ୍ତି ମାଇପି ଦିହେଁ । ଜଣେ ବୃଦ୍ଧା, ଆଉ ଜଣେ ତରୁଣୀ । ମନେରେ ଦୟା ଆସିଲା । ନାଆ ନେଇଗଲି ।

ବୁଢ଼ୀ କଲ୍ୟାଣ କଲା—'କୋଟି ପରମାୟୁ ହେଇ ଥାଉରେ ପୁଅ' ।

କରୁଣା ପଚାରିଲି, ଏତେ ରାତିରେ କୁଆଡ଼େ ଚାଲିଛ ମାଉସୀ ?

ବୁଢ଼ୀ ଏଇ କଥା ଶୁଣି କେଜାଣି କାହିଁକି କାନ୍ଦି ପକାଇଲା । ଆଖିରେ ଜାଗିଲା ଲୁହର ଜୁଆର । ତା'ର ଉପରେ ସେ ଭସାଇ ଦେଲା ତା'ର ଅତୀତ ଘଟଣାରାଜିର କୁଟା-କାଠିକୁ ।

ନାଆ ଚାଲିଥାଏ ।

ବୁଢ଼ୀ କହୁଥାଏ

ତା'ର ଅଙ୍ଗ ନଭେଇବା କଥା, ଅତୀତର ସ୍ୱୀନସ୍ଥା

ଗୋଟିଏ ବୋଲି ଝିଅ ଏଇ ରଙ୍ଗ । କେତେ ଗେଲବସରରେ ବଢ଼ିଥିଲା । 'ରେ' ପଦ କାହାଠୁଁ ଶୁଣି ନଥିଲା । ହେଲେ ସବୁକଥା ମଣୁଷିନେ ରହେନା । ଶେଷରେ ଦଇବ ଭଗାଣ ହେଲା । ଅଧା ବଅସରେ ସିଏ ହାତରୁ କାଚ କାଢ଼ିଲା । ମୁଣ୍ଡରୁ ସିନ୍ଦୂର ପୋଛିଲା । ତା' ଝିଅର ଗେହ୍ଲାବସର ଧୂଳିରେ ମିଶିଲା । ଦାଦା ଖୁଡ଼ାଙ୍କର ନିର୍ଯାତନା ସହିବାକୁ ହେଲା । 'ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଟାଣଇ ତେଣିକି ଯାଇ' । ତା' ମନଇଚ୍ଛା, ସେ ତା'ର ଟାଣିଲା । ଘୋସାଡ଼ିଲା । ହୃଦୟ ଆଉ ମନକୁ ଖଣ୍ଡିଆ ଖାବରା କଲା । ଯନ୍ତ୍ରଣା ବଢ଼ିଲା । ଶେଷରେ ସେ ଦାଉ ଆଉ ସମ୍ଭାଳି ହେଲାନି । ଝିଅକୁ ସାଙ୍ଗରେ ଧରି ସେ ଘରୁ ଗୋଡ଼ କାଢ଼ିଲା ।

'ଆଜି କୁଆଁର ପୁନେଇଁରେ ପୁଅ ! ଏ ଭଲଆ ଦିନୁଟାରେ

ଆଉ କହି ନ ପାରି ସେ କାନ୍ଦି ଉଠିଲା ଜୋର୍‌ରେ । ଝିଅଟି ତାକୁ ବୋଧ ଦେଲା । 'ଛି ବୋଉ, ତୁ କାନ୍ଦୁଚୁ କାହିଁକି ? କେଉଁଠି କୂଳ ଆମର । ରାତି ପାହିଲେ କାଠି ବେଉସା ଲଗେଇ ଦବା । ପେଟ ଦି'ଟା କ'ଣ ଅପୋଷା ରହିବ । ଠାକୁରେ ପେଟ ଦେଇଚନ୍ତି ଯେତେବେଳେ ବଞ୍ଚିବାର ବାଟ ନିଶ୍ଚୟ କରିବେ । ହେଇ ଦେଖ, ଭଗବତି ଘାଟ, ବଟେଶ୍ୱର ଗାଆଁ ଆଉ ଦିଶୁନି । ଆଗରେ ଭଗବାନ ପୁର । ମାମୁଘର ପାଖ ହେଇ ଆସିଲା । ଆଉ ଚିନ୍ତା କ'ଣ ? ଛୁଃ, ଆଉ କାନ୍ଦନା ।

ବୁଢ଼ୀ ଭଙ୍ଗା କଣ୍ଠରେ କହିଲା, ପେଟ ଚିନ୍ତା ସିନା ରହିବନି, ତୋ ଚିନ୍ତାତ ରହିବ ଲୋ ମା ! ଝିଅ ଘିଅ । କେତେଦିନ ଆଉ ସାଇତିବ !

ଝିଅଟି ମଉନ ରହିଲା ଏଥର । କରୁଣା ସବୁ ଶୁଣୁଥିଲା । ଶେଷରେ କହିଲା, ମାଉସୀ ରଙ୍ଗପାଇଁ ଏତେ ଚନ୍ତା କ'ଣ ମ ! ତା'ପାଇଁ କ'ଣ ବରଘର ଅଭାବ ରହିବ ?

ପ୍ରକୃତରେ ତା'ପାଇଁ ବରଘର ଅଭାବ ରହିଲାନ । ମଗୁଶିର ମାସ ଆଖର ଦିଥିରେ ସେ ତା'ର ନୂଆ ସଂସାର କରିବାକୁ ଆସିଲା କରୁଣା ଘରକୁ ।

ସେଦିନ ବି ଆକାଶରେ ଜ୍ୟୋତ୍ସ୍ନାର ଜୁଆର ଉଠୁଥିଲା । ଶୀତ ଛପି ଛପି କଲଜା ଥରାଇ ଦେଉଥିଲା । ନବଗ୍ରହମ୍ୱରରେ ବାହାଘର ସରିଗଲା । କରୁଣାର ଭଙ୍ଗାଘରେ ଧୋବ-ଧାବଲା ଚଟା ପଡ଼ିଲା । ତା'ର କୁଡ଼ିଆ ଘରକୁ ନଇଁ ନଇଁ ଜଗି ଜଗି ଗ୍ରେଣ୍ଟ ଗ୍ରେଣ୍ଟ ପାହୁଲ ପକାଇ ଆସିଲା ରଙ୍ଗ ।

ସତରେ ତା'ର ଭଙ୍ଗା କୁଡ଼ିଆରେ ରଙ୍ଗ ଲଗିଲା । କରୁଣା ବଦଳିଗଲା । ହୁରୁମାଗିଣ ଗ୍ରାଞ୍ଚ ଘର ଆଡ଼କୁ ମନ ଦେଲା । କାଣୀ ମା' ବୁଢ଼ୀ ଉପରେ ଘରର ଭାର ନଗ୍ରୁହ ନଜେ ମଙ୍ଗ ଧରିଲା । ସାଙ୍ଗ-ସରିସା ଟୋକା-ଟାକଳିଆ ଥଟ୍ଟା ପରିହାସ କଲେ । କିଏ କହିଲା, କରେ ବାପ, ଗ୍ରଢଗ୍ରଢ ଲମ୍ବ ଦାଢ଼ୀ । ଭଲ-ଭଲ । ଏକବାରେ ପକ୍‌କା ଗୃହସ୍ଥ । ସଞ୍ଜ ପହରୁ ବି ଘର ଗ୍ରୁଡ଼ିବା ମୁସ୍କିଲ ।

କିଏ କହିଲା, କରେ ରଙ୍ଗ, ତୋ ମନରେ ଏମିତି କ ରଙ୍ଗ ବୋଳିଲା କ ?

ଆଉ କିଏ କହିଲା, ହଁରେ, ବେକରେ ପଡ଼ିଲେ ସମସ୍ତେ ବଜେଇ ଶିଖନ୍ତି ।

କରୁଣା ସେ ଆଡ଼କୁ ନଘା ଦେଇନ । ସେ ଘର କରିବ । ମଣିଷ ହବ ! ରଙ୍ଗକୁ ସେ ତା' ଘରକୁ ହାତଧରି ଆଣିଚ । ବିଗ୍ଭଷ୍ଟ ନଆଶ୍ରୀଟାଏ । ତା' ମୁହଁରେ ଆହାର ଦବ । ଏଇ ହେଲା ତା' ଜୀବନର ଲକ୍ଷ୍ୟ । ଏଣିକ ଚନ୍ଦ୍ରୋତ୍ପଳାର ସେଇ ଘାଟରେ ଯେତେ ଗ୍ରଢ ହେଲେବି କେହି ଆଉ ଫେରନ୍ତିନ ।

ବାହାଘରର ବରଷ ପାଞ୍ଚଟା ପରେ ତାଙ୍କ ସଂସାରକୁ ଅଇଁଣ୍ଡା ଆସିଲା । ଟିକ ମୁହଁ, ଟିକ ହାତ । ଠିକ୍ ଜାଅନ୍ତା ଠାକୁର ପ୍ରତମାଟି ଭଲି । ହେଲେ ଠାକୁରେ ତା' ଉପରେ ସବୁବେଳେ ଗ୍ରଗ ରଖିଲେ । ଦିନେହେଲେ ତ ସୁଖରେ ରଖିଲେନ ତାକୁ । ଏ ଝଡ଼ି ବରଷା ଦିନେ ବି……

ଚମକ ଉଠିଲା କରୁଣା । ଏ କ'ଣ କରୁଚ ସିଏ ! ଆଣୁ ଏ ପାଣିରେ ଠିଆହୋଇ କ'ଣ ଗ୍ଭ଼ୁଡ଼ାଏ ଭାବୁଚ । ଆକାଶକୁ ଗ୍ଭହିଁଲା । କାହିଁ, ବରଷା ଦଭାସୀ ତ ମଳିନ ପଡ଼ିନ ?

ଆରପାରରୁ ଲୋକଟା ସେମିତ ଡାକୁଚ । କରୁଣା ରେ-ଏ-ଏ ହେ-ଏ-ଇ……

ନା, ସେ ଯିବ ତା'ର କର୍ତ୍ତବ୍ୟ କରବ । ନ ହେଲେ ଠାକୁର ଅଶାନ୍ତ ହେବେ । ମା ଭଗବତୀ ରାଗିବେ । ନାଉରୀ ସେ । ବେଳ ଅବେଳରେ ପନ୍ଥୀମାନଙ୍କୁ ପାରକରବା ତା'ର କାମ । ତା' ଆଗରେ ପୁଅକୁ ଭଲ କଲବା ଯେତିକ ବଡ଼ କାମ, ପନ୍ଥୀମାନଙ୍କୁ ବିପଦ ବେଳେ ପାରକରବା ସେତକ ମହତ କାମ । ସେ ଭୁଲ୍ କରଚ । ଜାଣି ଜାଣି ଲୋକଟାକୁ ସେପଟେ ଦଣ୍ଡ ଦେଉଚ । ସେ ଯିବ । ସେ ନିଶ୍ଚୟ ଯିବ ।

ନିର୍ଜନ ବେଳା । ଅନ୍ଧାରରେ ରୁମମୂଳ ଦିଶୁନ । କନ୍ତୁ କରୁଣାକୁ ବୁଝି ଦିଶିଲା । 'ହରବୋଲ୍' ଦେଇ ସେ ନାଆ ମେଲ୍‌ଦେଲା । କାତ ଭିଡ଼ିଲା । ହର… ଇ…ବୋଅଲ…

ପବନ କମିନ । ବତାସୀ ଥମିନ । ନାଆ ବାହି ଚାଲିଚ କରୁଣା । ଏକୁଟିଆ ଉଚ୍ଛୁଳା ନଈ ସଙ୍ଗେ ସଂଗ୍ରାମ କରୁଚ । ପନ୍ଥୀମାନଙ୍କୁ ପ୍ରତି-ଉତ୍ତର ଦେଇ ଏଥର କହିଲା, ଯାଉଚ, ଯାଉଚ ।

ନିଗୁଟିଆ ରାତ । ନଈର ପେଟରୁ ଗୁରୁଗୁରୁ ଗର୍ଜନ ଶୁଭୁଚ୍ଛ । କଲକଲ ଚତ୍କାର ଉଠୁଚ । ସୁ-ସୁ ପବନ ଡାକୁଚ । ହଠାତ୍ କାତର ଡବଡବ ଶବ୍ଦ ବନ୍ଦ ହେଲା । ବୋଧହୁଏ ଆହୁଲା ଭିଡ଼ିଲା ସେ । ରାତର କଳା ଗ୍ରାଡରେ ଶବ୍ଦ ପିଟିପିଟି ସେ ଆଗେଇ ଚାଲିଚ । ଆରପାରରୁ ଲୋକଟା ସେମିତ ଡାକୁଚ । ତା' ସ୍ୱର ଶୁଣିନ ବୋଧେ । କରୁଣା ଏଥର ଖଣ୍ଡଖଣ୍ଡିଆ ଗୀତ ଆରମ୍ଭ କର ଦେଇଚ । 'ଘରେ ମୋର ଚାନ୍ଦମୁହାଁ ଚାହିଁଥିବ ବସି ରେ, ସଅଳ ତୁ ନାଆ ଯାଆ ଭାସି' ।

ତୁଠ ଗ୍ରାଡ଼ ନାଆ ନଈ ମଝିକୁ ଗଲାଣି । ସେପାରର ଡାକ ସଙ୍ଗେ ପ୍ରତିଦ୍ୱନ୍ଦ୍ୱତାକର ଏପାରରୁ ଶୁଣାଗଲା ବୁକୁଫଟା ଚତ୍କାର, ଚାପା ପ୍ରାଣର କାନ୍ଦଣା । 'କରୁଣିରେ—ଏ… ଏ'…

ଦାଉଁକନା ତା' ଗ୍ରାଡରୁ କ'ଣ ଖସିପଡ଼ିଲା । ଏଁ…ଏ ତ ବୋଉର ସ୍ୱର ! ଏତେ ରାତରେ ବୋଉ କାହିଁକ ଆସିଚ !!! ତେଣେ ଆରପାରରୁ ଡାକ ଶୁଭିଲା, ଏଣେ ଏପାରରୁ ଶୁଭିଲା କାନ୍ଦଣା । 'ହାଁରେ, ସବାଖାଇ ଯମ ! ଏଇୟା ତୋ ମନରେ ଥିଲା । ତଳେ ପକେଇଲା 'ଅଇଁଶାକୁ' ତୁଣ୍ଡରେ ଦେଲୁ । ବାପା କରୁଣିରେ … !!

ନଈ ମଝି । ଦୁଇ ପାଖର କଥା ବେଶ୍ ଶୁଣିପାରୁଚ ସେ । ପଟ୍ଟାଙ୍ଗୀ ଜଣକ ଏବେ ମଧ୍ୟ କଣ୍ଠ ଫଟେଇ ଚତ୍କାର କରୁଚ । ଏପାଖରୁ ମା ବୁଢ଼ୀର କାନ୍ଦମିଶା ଆତୁର ଡାକ କାନ ଭିତରେ ପଶି ହୃଦକୁ ମନ୍ଥୁଚୁ । ପବନ ଖୁବ୍ ଜୋର୍‌ରେ ବ ବହୁବା ଆରମ୍ଭ କରଦେଇଚ । ଶୁଭୁଚ···'ଉଲେ ପକେଇଲୁ ଅଇଁଣ୍ଟାକୁ ଭୁଣ୍ଡରେ ଦେଲୁ' !!!···

ନଷ୍ଟଲ କରୁଣା । ହାତ ତା'ର ସ୍ଥିରହେଲା । ସ୍ଥିର ଥିଲା କାଉ । ନୀରବ ହେଲା ଆହୁଲା । ମୁଣ୍ଡ ତା'ର ଭଉଁଗି ଖେଳିଲା । ତା'ର ମନେ ହେଲା ମଝି ନଈରେ ନାଆଟା ଖୁବ୍ ଜୋର୍‌ରେ ଘୂରୁଚ । ଆଉ ଝଡ଼ ଖୁବ୍ ଜୋର୍‌ରେ ଆରମ୍ଭ ହେଇଚ । ନାଆ ଏଥର ବୁଡ଼ିଯିବ । ନା, ବୁଡ଼ନ । ବୁଡ଼ିଯାଇପାରେ ···

ଆର ପାଖ ଡାକସ୍ୱର ବରଉ ନାହିଁ । ଏପାଖର କାନ୍ଦଣା ଶୁଭୁଚ । ମଝିଟା ପ୍ରାୟ ନୀରବ । କେବଳ କଳକଳ ଶୁଭୁଚ ପାଣିର ଗର୍ଜନ । ପବନ ବହୁଚ । ମଝିରେ ନାଆ ଆଉ ତା'ର ନାବକ



ଲେଖା ତା ୩୧ । ୧ । ୧୯୬୫ ଖ୍ରୀ । 'ପୁଷ୍ପଗିର' ପୂଜା ସଂଖ୍ୟାରେ ପ୍ରକାଶିତ ।

# ଭୁବନେଶ୍ୱର ମେଳା

କେ ଜାଣି କେତେ ସମୟ ପରେ—

ନବଘନ ପ୍ରଥମ କରି ଅନୁଭବ୍ କଲା ତା' ବେକମୂଳଟା ହାଲୁକା ଲାଗୁଛି । ଠିକ୍ ଯେମିତି ତା' ବୋଉ ମଲାର ଦଶଦିନେ ନଣ୍ଡାହୋଇ ପାଣିରେ ବୁଡ଼ିଲାବେଳେ ଅନୁଭବ କରିଥିଲା, ବୋଧହୁଏ ତା' ମୁଣ୍ଡଟା ନାହିଁ—ସେଇ ବିଚିତ୍ର କରୁଣ ଅନୁଭୂତିଟା ତା' ପିଞ୍ଜରା ଭିତରେ ସବୁଠୁଁ କଅଁଳିଆ ଚଜାଟାକୁ ଅକସ୍ମାତ୍ ଛୁଇଁଦେଇ ଚାଲିଗଲା । ସେ ହଠାତ୍ ଭାବିନେଲା, ପୁଣି ବୋଧେ ଆଉଥରେ ତା' ବୋଉ ମରିଗଲା ।

ସେ ତା' ବେକ ଚାରିକଡ଼ ହାତ ବୁଲାଇ ଆଣି ଗୋଟାଏ ବିଦଗିଧ ଭଙ୍ଗୀରେ ଠାଏଁ ଠିଆ ହୋଇଗଲା ଖୁମ୍ବଭଳି । ସେତେବେଳେ ନବଘନ ପାଟିବାଟେ ନିଃଶ୍ୱାସ-ପ୍ରଶ୍ୱାସ ନିଆ-ଅଣା କରୁଥିଲା; ନାକବାଟେ ନୁହେଁ । କିଛି ସମୟ ପୂର୍ବରୁ ଦଉଡ଼ା-ଦଉଡ଼ି କରୁଥିବାରୁ ନିଶ୍ୱାସଗୁଡ଼ାକ ଫଁ-ଫଁ ହୋଇ ଯା-ଆସ କରୁଥିଲେ । ଠିକ୍ ସେତିକିବେଳକୁ ପଡ଼ିଆର ବାଁପଟେ ଉଁଚୁ ଉଁଚୁ କୋଠାଘର କନ୍ଦରେ ସୂର୍ଯ୍ୟ ତାଙ୍କର କ୍ଳାନ୍ତ ନାଲିଆ ମୁହଁଟାକୁ ଲୁଚେଇ ପଳେଇ ଯିବାକୁ ବସିଥିଲେ ।

ମେଳଣ (ପ୍ୟାରେଡ଼୍) ପଡ଼ିଆରେ ହେଉଚି ।

ମାଇକ୍ ଗର୍ଜୁଚି ;

ଡାକୁଚି—ରହିଯାଅ, ବସିଯାଅ ଭାଇମାନେ !

କିନ୍ତୁ ଅଧିକାଂଶ ଖସି ପଳେଇ ଯିବାକୁ ବସିଛନ୍ତି ଡରକୁଳା ସୂର୍ଯ୍ୟଙ୍କ ଭଳିଆ । ପୋଲିସର ଅନ୍ଧାଧୁନ୍ଦିଆ ଲାଠି ମାଡ଼ରେ କିଏ ସେଠି ସମ୍ଭାଳା ପଡ଼େ ! ଏକବାରେ ଗୋଗଛବାଡ଼ିଆ । ଏଣେ ପୁଣି ଏ ଛେଚେଡ଼ା ଖବସା ଟୋକାଗୁଡ଼ାକ ମାଙ୍କଡ଼ଙ୍କ ଭଳି ବୋଲୁଅ ଫୋପାଡୁଥାଆନ୍ତି । ଏଣୁ କେଞ୍ଚା ତେଣୁ କେଞ୍ଚା; ଏଥିରେ କି ମଣିଷ ବଞ୍ଚେ । ପ୍ରାଣ ଧରି ପଳେଇ ଆସିବା କଥା ।

ଗୋଠ ଭିତରୁ ଜୀବନ ଭୟରେ ପଳାଇ ଆସୁ ଆସୁ ନବଘନ ତା' ଜୀବନର ପ୍ରିୟ ସାଥୀଟିକୁ ହଜେଇ ବସିଲା । ସେ ବାରମ୍ବାର ବେକ ଓ କାନ୍ଧରେ ହାତ ବୁଲେଇ ବୁଲେଇ ଘଣ୍ଟଣାର ସତ୍ୟତା ଉପଲବ୍ଧି କରିବାକୁ ଚାହୁଁଥିଲା ।

ଅନେକ ବେଳଯାଏ ଘଣ୍ଟଣାଟା ମିଛ ମିଛ ମନେ ହେଉଥିଲା ତାକୁ । କିନ୍ତୁ ସତଟା ଜାଣିସାରିଲା ପରେ ସେ ଆବ୍ବା-କାବା ହେଇ ଠିଆ ହୋଇପଡ଼ିଲା ସେଇ ଧୂଳିଉଡ଼ା ମଣିଷ ଭିଡ଼ ପଡ଼ିଆ ଭିତରେ । କେଜାଣି କେମିତିଆ ଗୋଟିଏ କୋହମିଶା ବେଦନା ତା' ପେଟ ଭିତରୁ ବାହାରି, ଉପରମୁହାଁ ହେଇ ଆଖିପଟାଗୁଡ଼ାକୁ ଓଦାକରି ପକାଇଲା । ତା'ର ଇଚ୍ଛା ହେଲା, ବଡ଼ ପାଟିରେ ଭେଁମାରିଡ଼ି ପକେଇ କାନ୍ଦନ୍ତା । କିନ୍ତୁ ଲାଭ କ'ଣ ?

ଖାଇବା ହାତଟା ଯେତେଥର ତା' ଶୂନ୍ୟ କାନ୍ଧ ଉପରେ ନିର୍ଗଣହେଇ ପହଁରି ଆସୁଥିଲା, ସେତେଥର ତାର କୋହ ଉଠୁଥିଲା ଅସମ୍ଭାଳହେଇ । କାନ୍ଧରେ 'କାଳିଆ' ନାହିଁ । ତା'ର ଏକୁଟିଆ ଜୀବନର ସାଥୀ, ନିଃସଙ୍ଗତାର ଖେଳନା 'କାଳିଆ' କାନ୍ଧରେ ନାହିଁ । ନଇଁ ପଡ଼ିଥିବା ପାଚିଲା ଧାନଗଛର ଅଣ୍ଟାରେ ଭରା ଦେଇ ଉପରକୁ ମୁଣ୍ଡ ଟେକୁଥିବା ବରଗଛ ଭଳି, ଦୀର୍ଘ ଦ'ଦିନ ହେଲା ଯିଏ ବେକ ଟେକି ନବଘନ କାନ୍ଧରେ ଶୋଇ ଶୋଇ ଆସିଥିଲା, ସେ ନାହିଁ ।

ଏତେ ମଣିଷଙ୍କ ହାବୁଡ଼ରେ ସେ ଜମା ଡରକି ନ ଥିଲା । ବରଂ ଭୋକ ଲାଗିଲାବେଳେ ନବଘନର କାନପାଖକୁ ଥୋମଣିଟାକୁ ବୁଲେଇ ନେଇ ଅଧ କଅଁଳ ସ୍ୱରରେ କହି ଉଠୁଥିଲା—ଉଁ-କୁଁ-ମେଁ……

ମଣିଷ…ମଣିଷ, ମଣିଷ ସାଲୁବାଲୁ ଚାରିଆଡ଼େ । ପୁଣି କୁଆଡ଼େ ହେଲେ ବଣବୁଦା ବବାକେ ନାହିଁ; ଖାଲି କୋଠାଘର ଉପରେ କୋଠାଘର; ସବୁଆଡ଼ ଧବଳମୟ ପୁର । ବାଡ଼ି ବଗିଚ୍ଚ ପନିପରିବା ତ କିଛି କୁଆଡ଼େ ନାହିଁ । କୋଉଠୁ କ'ଣ ଯିଡ଼ିଆସି ଏମାନେ ଚଳନ୍ତି ! କାଲି ରାତିରେ ତ ମିଣ୍ଟିକ ଭିତରେ କାହିଁ କାହିଁ ମୁଲକରୁ ଆସିଥିବା ଲୋକମାନେ ଖାଇଲେ । କେତେ କେତେ ହାଣ୍ଡିମାନ ରନ୍ଧାରେ ବୋଝେଇ । କୋଉଠୁ ଆଣିଲେ ଏତେଗୁଡ଼ା ଜିନିଷ ! କିଏ ଯୋଗାଡ଼ କଲା ସେଗୁଡ଼ାକ ! ଯିଏ ଏସବୁ ଦଉଚି, ତାଆର ଜାଣି ଅସରଣିଆ ପଡ଼ିଚି ।

ନିଜର ଯଥାସମ୍ଭବ ବଡ଼ ମାପକାଠିରେ ଏସବୁକୁ ମାପି ବିଫଳ ହୋଇଥିଲା ନବଘନ । ସେ କିଛି ଥଳକୂଳ ପାଇପାରୁ ନ ଥିଲା । ଜୀବନରେ ପ୍ରଥମ ଥର ପାଇଁ ନୂଆ ରାଜଧାନୀ ଦେଖୁଚି ସେ । କେବଳ ନୂଆ ରାଜଧାନୀ କାହିଁକି, ସହରୀ ଜୀବନ ବିଷୟରେ ତା'ର ମୋଟାମୋଟି କିଛି ହେଲେ ଧାରଣା ନ ଥିଲା । ଗାଁ

ସରପଞ୍ଚଙ୍କ ନିର୍ଦ୍ଦେଶରେ, ପାଦଚଲା ଅଙ୍କାବଙ୍କା ରାସ୍ତା ଟପି, ଓସାରିଆ ନାଲିଆ ରାସ୍ତା କଡ଼ରେ ପହଞ୍ଚିଲାବେଳକୁ ଗୋଟାଏ ଅସୁର ଭଳିଆ ଦୁର୍ଦ୍ଦାନ୍ତ ଟ୍ରକ୍‌ଗାଡ଼ି ଆଗରେ ଆସି ଛିଡ଼ା ହୋଇ ଯାଇଥିଲା ଓ ତହିଁରେ ନଦା ହୋଇ ଆସିଥିଲେ ତାଆରି ଭଳି ଅନେକ ନବଘନ ।

ନବଘନକୁ ସେତେବେଳେ ଭାରି ଖୁସି ଲାଗୁଥିଲା । ତା'ର ମନେ ହେଉଥିଲା ସେ ତୀର୍ଥକରି ଯାଉଛି । ଦି'ତିନି ବର୍ଷରେ ଥରେ ନେଁଖା ତା ଅଞ୍ଚଳର ଟଥିଲାବାଲା ଲୋକେ, ଗୋଟାଏ ଗାଡ଼ିକରି ତୀର୍ଥଯାତ୍ରା କରି ଯାଉଥିଲେ । ଅନେକଥର ଚେଷ୍ଟା କରି, ପଇସା ପଞ୍ଚି, ଆଖିର ଅନ୍ଦାଜା ମାପକାଠିରେ ସେତେ ଟଙ୍କା ପଇସାକୁ ମାପି ନ ପାରି, ସେ ହତାଶହୋଇ ରହି ଆସିଥିଲା । କିନ୍ତୁ ଆଜି ଦାଇବୀ ଯୋଗକୁ ସେ ସୁଯୋଗ ଆସି ମିଳିଗଲା ।

କୁଆଡ଼େ ମନ୍ତ୍ରୀ କଡ଼ରୁ ଅରଡ଼ ଆସିଥେଲା ଆମ ମେଳେଏ ସାହାବ ପାଖକୁ । ମେଳେଏ ଅରଡ଼ ଦେଲେ ସରପଞ୍ଚ କତକ—ସମତେ ଭୁବନଶୋର ଚାଲ; ସେଠି ମନ୍ତ୍ରୀ ବଡ଼ ମେଳା କରୁଚନ୍ତି ଦୁଷ୍ଟନାଶନ ପେଇଁ । ତା'ପରେ ଧରଣୀ ଶାନ୍ତ ହୋଇଯିବ । ବୁଝେଇଁକ ଏଣେ ତ କାମ ଗୁଡ଼ାଏ । ତେଣେ ଭୁବନଶୋର ନ ଗଲେ ସରପଞ୍ଚ ଚୁଲି ଗାଲ ରଖେଇ ଦେବେନି । ଅସରଣିଆବେଳେ ତାଙ୍କଠେଇଁ ହାତ ପାତିବାକୁ ହବ ।

ନବଘନର ଆସିବାକୁ ଇଚ୍ଛା ନ ଥିଲେ ବି ପୁଣି କେତେଟା କାରଣରୁ ମନ ହେଲା—ବିନା ପଇସାରେ ଭୁବନେଶ୍ୱର ଯାଇଁ ସେଠିକା ଦିଅଁ-ଦେବତା ଦେଖି ଆସି ପାରିବ । ଗୋସେଇଁ ମାହାପ୍ରଭୁଙ୍କୁ ଶୁଣିଚି, ସେଠେଇଁ କୁଆଡ଼େ ଲକ୍ଷେରୁ ଗୋଟାଏ ଊଣା ଦିଅଁ ଅଛନ୍ତି । ତେଣୁ ଯିବାପାଇଁ ଲୋଭ ହେଲା ତା'ର । ଦି'ଦିନ ପାଇଁ ଘରଦ୍ୱାର ବନ୍ଦକରି, କାଳିଆକୁ କାନ୍ଧରେ ବସେଇ, ବାହାରି ପଡ଼ିଲା ସେଇ ନାଲିଗୋଡ଼ି ପଡ଼ିଥିବା ଓସାରିଆ ରାସ୍ତା କଡ଼କୁ । ସରପଞ୍ଚ କହିଥିଲେ, ସେଇଠୁ ଗାଡ଼ି ଆସି ତାଙ୍କ ହାତଧରି ଉଠେଇନେବ ।

ଗାଡ଼ିରେ ଉଠିଲା ପରେ ନବଘନ ଦେଖିଲା, ସେଥିରେ ମଣିଷ ଚାଳି ପଡ଼ିଛନ୍ତି । କିଏ ଗ୍ରେଟିଆ ରଙ୍ଗ ବାକ୍‌ସଟିଏ ମୁଣ୍ଡେଇଚି ତ, କିଏ ବଡ଼ ପୁଡ଼ିଆଟିଏ ଧରି ବସିଚି । କିନ୍ତୁ ତା'ଭଳି କେହି କାଳୁଟାଏ ଧରି ଗାଡ଼ିରେ ଉଠିଥିବା ସେ ଲକ୍ଷ୍ୟ କରି ନ ଥିଲା । ଅଧିକାଂଶ ଚହ୍ଲାଜଣା ମୁହଁ; ହସାହସି, ମୁହଁ ଦେଖାଦେଖି ପରେ—ଏଇଟା ଅବାଗିଆ କଥା ହେଲା ବୋଲି ଅବଶ୍ୟ କେହି ବାରି ନ ଥିଲେ ନବଘନକୁ ; ମାତ୍ର ପ୍ରଶଂସା ବି କରି ନ ଥିଲେ । କିନ୍ତୁ ଏକଥା ସେ ଦେଖିଚି, କେହି କେହି ସହଯାତ୍ରୀ କାଳିଆର

ମୁହଁ ଧରି ଟିକେ ଟିକେ ଗେଲକରି ଦଉଥିଲେ । ବାଃ ଏଇତ ଆନନ୍ଦ, ଏଇତ ଜୀବନ ! ତା' ଖୁସିରେ ସମସ୍ତଙ୍କର ଖୁସି ।

ନବଘନ ବନ୍ଧୁ ଚନ୍ଦ୍ରାକର କାଳିଆକୁ ଗାଁରେ ଛାଡ଼ି ଆସିପାରି ନ ଥିଲା । କାହା ଘରେ ଛାଡ଼ି ଆସନ୍ତା ? ସିଏ ଯଦି ତା'ଭଳିଆ କାଳିଆର ମନକଥା ବୁଝି ନ ଥାନ୍ତେ ! ବିଦେଶରେ ଦି'ଦିନକାଳ ନବଘନ ତ ଶାନ୍ତିରେ ରହିପାରି ନ ଥାନ୍ତା । ସେଥିରେ ପୁଣି ଗାଁ-ଗାଁରେ ଚୋରି ଭୟ । ପାଚିଲା ଧାନ କିଆରୀରୁ ଚୋର ଧାନ କାଟି ନେଇ ଯାଉଛନ୍ତି; ଛୁରି-ଭୁଜାଲି ଦେଖେଇ ଧନ-ସମ୍ପତ୍ତି ଲୁଟି ନେଇ ଯାଉଛନ୍ତି । ଦିନ ଦି'ପହରେ କାହିଁ କାହିଁ ଲୋକ ଆସି ଝିଅ ବୋହୂଙ୍କୁ ବେଇଜ୍ଜତ କରୁଛନ୍ତି; ଇଜ୍ଜତ ନେଉଛନ୍ତି ।

ଗାଁ ଜୀବନ ଭେଷେଡ଼ା ହୋଇଗଲାଣି । ଧର୍ମକର୍ମକୁ ଲୋକଙ୍କର ଆଉ ଭୟ ନାହିଁ । ପୁଲିସି କଥା ପଚାରେ କିଏ ? ପୁଲିସିଏ ଏବେ କରିବେ କଅଣ ? ସବୁବେଳେ ତ ଏ ଅବାଜା ଛେଚେଡ଼ା ଟୋକାଙ୍କ ପିଛା ଧରିବାକୁ ପଡ଼ିଲା; ଦୁଷ୍ଟଦଳନ କରିବାକୁ ହେଲା; ଚୋରି-ନାରୀ ଦେଖିବାକୁ ଆଉ ବେଳ କାହିଁ ? ସେଥିରେ ପୁଣି ମନ୍ତ୍ରୀ ନାଁମାନେ ମେଳା ମଉଚ୍ଛବ କଲେ, ସେଗୁଡ଼ାକ ଜଗିବାକୁ ପଡ଼ିଲା । ନ ଜଗିଲେ ପରା ଏ ଖବରିଆଗୁଡ଼ା ସବୁ ଉଜାଡ଼ିଦେବେ । ତାଇ କରିବାକୁ ପୁଲିସି ଆଉ କରନ୍ତା କଅଣ ?

କାଳିଆ ସେତିକବେଳୁ ଆଉ ତା' କାନ୍ଧରୁ ଓହ୍ଲେଇ ନାହିଁ । ସେ ବସିଚି ଯେ, ବସିଚି । ସଇସ ଭଳିଆ ବସିଚି । ନିଶ୍ଚିନ୍ତତାର ପ୍ରତିନିଧି ଭଳି ନବଘନ କାନ୍ଧରେ ଥାଇ କୁନ୍‌କୁନ୍ ହୋଇ ସବୁ ଦେଖୁଚି, ସେଇ ଭୋକବନ୍ଧଶୋଷିଆ ତୀର୍ଥଯାତ୍ରୀ ଦଳଟାକୁ । ତାଙ୍କ ଚଳମାନ ପରିବେଶକୁ । ଖୁନ୍ଦାଖୁନ୍ଦି ହୋଇ ଦଳେ ଲୋକ ଟ୍ରକରେ ଲଦା ହୋଇ ଚାଲିଛନ୍ତି । ବାଟରେ, ମଝିରେ ମଝିରେ, ଉଦାଖିଆ ଷଣ୍ଢ ଭଳିଆ ଗୋଟାଏ ଗୋଟାଏ ଧୋବିଲବାବୁ ଗାଡ଼ି ଅଟକେଇ, 'ଜିନ୍ଦାବାଦ-ଜିନ୍ଦାବାଦ' ଚିତ୍କାର କରୁଥାଆନ୍ତି ଏବଂ ସମସ୍ତଙ୍କୁ ସେଇଆ କହିବାକୁ କହୁଥାଆନ୍ତି । ମାତ୍ର ସେ କଥାଗୁଡ଼ା ନବଘନ ଓ ତା' ସାଙ୍ଗସାଥୀଙ୍କ ପାଟିରେ ପଶୁ ନ ଥାଏ । ସେମାନେ ଆଁ କରି ସେକଥା କହିବାକୁ ଚେଷ୍ଟା ଯେ କରନାହାଁନ୍ତି ତା' ନୁହେଁ— କିନ୍ତୁ କହି ହୁଏ ନାହିଁ ।

ମାତ୍ର ବାଟରେ ଦେଖାଗଲା, ସବୁ ଗାଡ଼ିରେ ଗୋଟା-ଦି'ଟା ଲେଖାଁ ଆଗଚଲା କୁହାଳିଆ ଭେଣ୍ଡିଆ ଥାଆନ୍ତି, ଯୋଉମାନେ ପଦ୍ଧରିକିଆ ଅଣ୍ଟିରେ ବାଲୁଆ ଭଳିଆ ମଝିରେ ମଝିରେ ରଡ଼ି ଛାଡ଼ୁଥାଆନ୍ତି । କେତେ ନାହିଁ କେତେ କଥା କ'ଣ କହୁଥାଆନ୍ତି । ନବଘନଦଳିଆ ବେଳେବେଳେ ପୁଲକିତ ହୋଇ ତା' ସାଙ୍ଗରେ ପାଟି କରି ଉଠୁଥାଆନ୍ତି "ହରିବୋଲ, ହରିବୋଲ ।"

ଏ ପାଟି ଶୁଣି କୁହାଳିଆ ଭେଣ୍ଡିଆ ଖୁସିହୋଇ ଉଠୁଥାଏ ଓ ଅଧିକ ଜୋର୍‌ରେ ଚକ୍କାର କରି ଉଠୁଥାଏ ମାରଣା ଷେଣ୍ଢ ଭଳିଆ । ତା'ର ଇଚ୍ଛା—ସାଙ୍ଗରେ ଯାଉଥିବା ଲୋକଗୁଡ଼ାକ କଚ୍ଛି ହେଲେ ପାଟି କରନ୍ତୁ; ଚୁପ୍‌ହୋଇ ନ ବସନ୍ତୁ ସେମାନେ । ପାଟି ନ କଲେ ଏ ଦେଶରେ କିଛି ହୁଏ ନାହିଁ । ଯେମିତି ହେଲେ ପାଟି ହବା ଦରକାର । ସମସ୍ତଙ୍କ ପାଟି ଶୁଣି ଶୁଣି ବେଳେବେଳେ କାଳିଆ ମଝିରେ ପାଳି ଧରେ—ଉଁ…କୁଁ…ମେଁ…

ନବଘନ ଖୁସିହୁଏ ।

ଖୁସିହୁଏ ଏଇଥିପାଇଁ,—କାଳିଆ ଖୁସିଅଛି ବୋଲି । ଇଏ ତା'ର ଖୁସିର ସ୍ୱର; ଆକୁଳ ଆର୍ତ୍ତି ନୁହେଁ । ତା' ଖୁସିରେ ଖୁସିହୁଏ ନବଘନ । ନବଘନ ଜୀବନରେ ଇଏ ଏକ ନୂଆ ଅନୁଭୂତି । ଟାଆଁସିଆ ସୂର୍ଯ୍ୟକିରଣରେ ଛିଡ଼ା ହୋଇହୋଇ ଯିବାକୁ କଷ୍ଟ ଲାଗୁ ପଛେ, ଭିତରେ ଭିତରେ ଗୋଟାଏ ପ୍ରକାର ମଜା ଲାଗୁଥିଲା ।

ବାଟରେ ଯୋଉଠି ଗାଡ଼ି ଅଟକୁଥାଏ, ସେଠି କାନ ଅତରା ପଡ଼ିଯାଉଥାଏ "ଜିନ୍ଦାବାଦ' ଧ୍ୱନିରେ । ପୁଣି ଚକ୍କାର ଶୁଭୁଥାଏ—'ଭୁବନେଶ୍ୱର ଚାଲ' । ଗାଡ଼ି ପଛକୁ ଗାଡ଼ି, ଲୋକ ଉପରେ ଲୋକ; ପାଟି ଉପରେ ପାଟି—'ଭୁବନେଶ୍ୱର ଚାଲ'। କେତେ ରକମର ଗାଡ଼ି,କେତେ କିସମର ମଣିଷ, ପୁଣି କେତେ ରଙ୍ଗର ପାଟି । ନବଘନକୁ ଏସବୁ କେମିତି କେମିତି ଗୁପ୍ତ-ରହସ୍ୟ ଘଟଣା ଭଳିଆ ଲାଗୁଥାଏ । ସତେ ଯେମିତି ସେମାନେ ଯୁଦ୍ଧକୁ ଚାଲିଛନ୍ତି—

କାହିଁକି ସମସ୍ତେ ଭୋବନଶୋର ଚାଲିଛନ୍ତି ? ବୋଧେ ସମସ୍ତେ ନଗଲେ ମୂଲକଟା ସିଆଡ଼େ ଉଲୁଡ଼ିଯିବ । ଉଦ୍‌ବାକିଆ ଟୋକାଗୁଡ଼ାକ ମାଙ୍କଡ଼ମିତି ନାଗିଛନ୍ତି । କ'ଣ ଭଲ ପାଉଚ ତେମେ । ଏତେ ନୋକ କମେଇହୋଇ, ଖାଦ୍ ଡମରପେଇଁ ଆସିଚନ୍ତି ନା । କେମିତିଆ ବୋପା-ମାଆ ତମର କେଜାଣି ? ଟିକେ ଆକଟ କରନ୍ତେ ଭଲ ! ଭାଇ କହିବାକୁ, ଆଜିକାଲି କେହି କ'ଣ ଗୋଟାଏ ଦାଇତ ମୁଣ୍ଡକୁ ନବାକୁ ଚାହୁଁଚନ୍ତି କି ?

ନବଘନର ଚିନ୍ତାରେ, ଚେତନାରେ କେବଳ ଭାବନା—

ଶରତର ଫିକାମେଘଭଳି ଚୁହା ଚୁହା ଭାବନା ।

ସେଇ ଭାବନାର ପେଡ଼ିଧରି ସେ ଭୁବନେଶ୍ୱରରେ ପହଞ୍ଚିଲାବେଳକୁ ଅପରାହ୍ଣ ଗଡ଼ି ଗଲାଣି । ସମସ୍ତେ ହୋ-କଳା ପାଟିକରି ଉଠିଲେ 'ଭୋବନଶୋର—ଭୋବନଶୋର'—

ଏଇଠି କିନ୍ତୁ ଓଲଟା କଥା ଘଟିଲା । ବାଟଘାଟ ପାର୍ଟି କରେଇବାପାଇଁ ଚେଷ୍ଟାକରୁ ଆସୁଥିବା କୁହାଳିଆ ଭେଣ୍ଡିଆ ଗୁଡ଼ା ଏଇଠି ସମସ୍ତଙ୍କୁ ଆକଟକରି କହୁଥିଲେ—'ଆଳ୍ବେ ଚୁପ୍ ! ଏଠି ଆଉ ପାର୍ଟିକରେନା । ଏଠି ଯାହା ପାର୍ଟିକରିବ, ଯାଇଁ କାଲି । ଚୁପ୍‌ଚାପ୍ ଗାଡ଼ିରୁ ଓହ୍ଲାଅ ।

ନବଘନ ଗାଡ଼ିରୁ ତଳକୁ ଆସିଲାପରେ ଜାଣିଲା ସୋବନଶୋରରେ ଘଞ୍ଚ ଥିବାର କଥା ନାହିଁ । ରାସ୍ତାଘାଟ, ଘରଦ୍ୱାର, ଆଲୁଅରେ ଝାଲୋଳ । ସବୁଆଡ଼େ ଥାକଲୁଥାକ କୋଠାଘର । ଗାଡ଼ି ମଟରର ଧାଁ-ଦଉଡ଼ । ସେଥିରେ ପୁଣି ଖାଇବା ଗ୍ଳଲତ ଯେ, ଗ୍ଳଲତ । ହଣ୍ଡାହଣ୍ଡା ପ୍ରେଷେଇ । କେତେ ଯେ କ'ଣ ରନ୍ଧା ହେଉଚ ତାର ହିସାବ ନାହିଁ । କିଏ ରାନ୍ଧିଲା ଏତେ ସବୁ ! କେଜାଣି ? ବଡ଼ ଆଚମ୍ବିତ କଥା !

ରାତଟା ଦାନଭଳିଆ ମନେହେଉଥିବା ନୂଆ ରାଜଧାନୀରେ ବି ନବଘନ ତା' କାଳିଆକୁ ଅଙ୍ଗଛଡ଼ା କଲାନାହିଁ । କେବଳ ତା'ଦେହର କେତେଅଂଶ ସେ ବେକମୂଳ୍ରୁ କୋଳ ପର୍ଯ୍ୟନ୍ତ ଟାଣି ଆଣିଥିଲା । ବାସ୍ ସେତିକି । ଇଏ ମଧ୍ୟରେ କାଳିଆ ଯେଉଁ ତିନି ଗ୍ରରଥର ମୁତିଛି, ତାହା ସେଇ ନବଘନର ଦାହରେ ଦାହରେ ଚରିଯାଇଚ । ଭିଡ଼ଭିଡରେ ଆଉ ସେଥିପ୍ରତି ସେ ଧ୍ୟାନ ଦେଇନାହିଁ । ଏବେ ଠାଏଁ ବର୍ଷ ପଡ଼ିଲା ପରେ ଗୋଟାଏ ବୋଦ୍‌କା ଭସୁମୂଳିଆ ଗନ୍ଧ ଆସି ତା' ନାକରେ ବାଜିଲା । ପ୍ରଥମେ ପ୍ରଥମେ ଏ ଗନ୍ଧ ତାକୁ ଲାଗିଲା ବେ-ବାଗିଆ । ପରେ କିନ୍ତୁ ଆରେଇ ଗଲା ।

ସମସ୍ତଙ୍କ ଖିଆପିଆ ସରିଲା ବେଳକୁ ଦୁଇଆଟା ଫରଚ୍ଛ ଦେଖାଗଲା । ନବଘନ ଓ ତା'ର ଭଳିଆ ଯେତେ ଥିଲେ, ଟିକେ ଟିକେ ଚମକି ପଡ଼ିଲେ । ଯାଃ, କେଡ଼େବଡ଼ ରାତଟା କେତେବେଳେ ଆସି ଗ୍ଳଲିଗଲା । ସକାଳର ଫରଚ୍ଛ ଆଲୁଅର ଲମ୍ବାହାତ ସବୁଆଡ଼େ ବୁଲବୁଲି କରୁଥିବାବେଳେ, ସେଇମାନେ ପୁଣି ଭାବିଲେ, ସତରେ, ରାତି ଆଲୁଅଟା ମିଛମିଛକା ସୂର୍ଯ୍ୟର ଆଲୁଅ—ଇଏ କେଡ଼େ ଚୋଫା ।

ଯା'ହଉ, ରାତି ପାହିଲା ।

ମନରେ ବିଗ୍ଳର କଲେ, ଦାନ୍ତ ପତର ଘଷି, କୋଉଠି ବୁଡ଼ଟେ ମାରି, ବାହାରି ପଡ଼ିବା ଦିଅଁ ଦେଖି । ଆଗ ଲିଙ୍ଗରାଜ, ତା'ପରେ ଅନନ୍ତ ବାସୁଦେବ, ଏମିତି ଏମିତି ଯେତେ ଦିଅଁଦେବତା ଅଛନ୍ତି, ଦେଖିଆସିବା । କିନ୍ତୁ ଠିକ୍ ବେଳକୁ ଅନୁକୂଳ ବଗାଡ଼ି ଦେଲେ ସେଇ କୁହାଳିଆ ଭେଣ୍ଡିଆ ପଞ୍ଝାଟା । କୋଉଠି ସବୁ ବସିଥିଲେ ତା' ମାଆ ଗଙ୍ଗେଇଙ୍କ ଜଣା—ଏକା ସାଙ୍ଗରେ ମାଡ଼-

ଆସି କହୁଉଠିଲେ, ନାହିଁ ନାହିଁ, କେହୁ କୁଆଡ଼େ ଯାଇପାରିବନି । ଶଳେ ! ପଇସା ଖର୍ଚ୍ଚ କରି ଆଣିଲୁ ଆମେ—ତେମେସବୁ ଯିବ ଆଉ କାହାପାଇଁ ଭଡ଼ାରେ ' ନାହିଁ, ଏଇଠି ରୁହ । ଏଇଠି ହଗ, ମୁତ,—ସବୁ ଏଇଠି । ଶଃ, ଖାଇବେ ମହାଦେବଙ୍କର—ଗାଇବେ ସହଦେବଙ୍କର !

ନବଘନ ଦେଖିଲା, ଜାଗାଟା ବଡ଼ ଫରକାଥିଆ । ଗୋଟାଏ ଖୁଆଡ଼ଭଳି । ନାହିଁ ନାହିଁ, ତାଙ୍କ ଅଞ୍ଚଳର କାଞ୍ଜିଆହୁଦା ଭଳି । ସତେ ଯେମିତି ଗୁଡ଼ାଏ ଅରଣା ପଶୁଙ୍କୁ ସେଠେଇଁକି ଆଣି ରଖା ଯାଇଛି । ଠିକ୍ ଦୁର୍ଗାପୂଜାରେ ବଳିପଡ଼ିବାକୁ ଜମା ହୋଇଥିବା ବୋଦା ଭଳି । ନହେଲା ଏବେ ନାଇ; ଆଜିକି ଯାଉ । ଆଉ ଗୋଟାଏ ଓଳି କମେଇ ହୋଇ ରହୁ, ତାଅଁ ଦେବତା ଦେଖିଯିବ । ସ୍ବାଙ୍କ ମେଳାଟା ସରିଯାଉ । ହେଲା ଏବେ ।

ପଡ଼ିକି ଭିତରେ ଆବର୍ଜନା ଓ ଦୁର୍ଗନ୍ଧରେ ଜାଗାଟା ସନ୍ତ୍ରେଇଗଲା । ସବୁ କେମିତିଆ ଗୋଟାଏ ମିଶାମିଶି ଗନ୍ଧ । ବିଡ଼ି ଧୂଆଁ, ଗୁଡ଼ାଖୁର କୁଟୁକିଆ ଗନ୍ଧ, ଧୂଆଁପତ୍ରର ଦୋକ୍ତାର ତିବ୍ରତା ଓ ତା' ସାଙ୍ଗକୁ ଝାଡ଼ା-ବାନ୍ତି-ପରିସ୍ରାର ମିଶ୍ରିତ ଦୁର୍ଗନ୍ଧ । କେହୁ କେହୁ ଅବେଳରେ ଅତ୍ୟଧିକ ଖାଇ ବାନ୍ତି କରିପକେଇ ଥିଲେ । କୋଉଠି ବାନ୍ତିକରିବେ ଠିକଣା ଜଣାନାହିଁ । ସେଇ ବାନ୍ତିକୁ ଅନେକେ ପାଦରେ ଚକଟି ତା'ର କର୍ଯ୍ୟାସ ନେଇ, ନିଜର ଲୁଗାପଟାରେ ବୋଳି ସାରିଲେଣି । ଏମିତିକି ଝାଡ଼ାରି ବି ।

ସମସ୍ତଙ୍କ କାମ ସରୁନସରୁଣୁ ଡାକରା ଆସିଗଲା, ମେଳଣ ପଡ଼ିଆକୁ ଚାଲ । ବାଟଯାକ କାଲିଭଳିଆ ଚକ୍କର କାଟିକରି ଚାଲ । ···'ଜିନ୍ଦାବାଦ ··· ଜିନ୍ଦାବାଦ' । ଏଥର କିନ୍ତୁ ଚାଲିଚାଲି ଯିବାକୁ ହେବ । ଏକଥା କହୁଗଲେ ସେଇ କୁହାଳିଆଙ୍କ ଭିତରୁ କେତେଜଣ ଆସି ।

ଖୁଆଡ଼ ଖୋଲାଗଲା । ଚାଲିଲେ ସମସ୍ତେ ଯେ-ଯାହା ପୁଡ଼ା-ପୁଟୁଳି ଧରି । ସୂର୍ଯ୍ୟ କେତେନାହିଁ କେତେ ଉପରକୁ ଉଠି ସାରିଥିଲେ କେଉଁ ସଅଳ । ସକାଳ ଯାଇ ଗାଧୁଆବେଳ ହେଲାଣି । ଏଠି କେତେ ଚଞ୍ଚଳ ବେଳ ପଳେଇ ଯାଏ କେଜାଣି । ଏଥର ବି ନବଘନର ବେକମୂଳେ ବସି ଚାଲିଲା କାଳିଆ । ବାଟଯାକ ସେଇ ପାଟିରେ ପଇଟୁ ନଥିବା ଶବ୍ଦକାର । ଅଗତ୍ୟା ନବଘନଦଳିଆ ଧୀରେ-ଧୀରେ 'ହରିବୋଲ-ହରିବୋଲ' କହୁ ଦେଉଥାଆନ୍ତି । ଲୁଣ ଖାଇଛନ୍ତି; ଗୁଣ ନ ଗାଇବେ କେମିତି !

ସହରର ବଜାର ଭିତରେ ଗ୍ରାମଗ୍ରାମ ମେଳଣ ପଡ଼ିଆରେ ପହଞ୍ଚିଲାବେଳକୁ ସେଠି ବହୁ ଆଗରୁ ରୁଣ୍ଡ ହୋଇସାରିଥିଲେ ଆହୁରି ଅନେକ ଲୋକ । ବୋଧେ ଅନ୍ୟ ଖୁଆଡ଼ର ବାସିନ୍ଦା ଏମାନେ । କେଡ଼େ ବଡ଼ ଯାଗା ଏଇଟା ! ଗାଁରେ ଆମ୍ବ-ତୋଟାରେ ମେଲଣ ହୁଏ । ହେଲେ ଏତେ ବଡ଼ ଯାଗା ତ ସିଏ ନୁହଁ । ଏଇଟା ଘଇତା-ମାଇ ଗହୀର ସାଙ୍ଗେ ସମାନ ହବ । ହଁ—ବୋପା ଲୋ ! କେତେ ବଡ଼ ! ମଝିରେ ଗୋଟାଏ ବଡ଼ ଦୁଙ୍କା ଅଛି । ନାଇଁନାଇଁ; ଦୁଙ୍କାତ ପାଲସ୍ ନୁହଁ—ଏଇଟା ତ ପାଲଟ୍, ନୋକ ବଇଚନ୍ତି, ଏଇଟା ଆଉ କ'ଣ ହୋଇଥିବ । କେଜାଣି କ'ଣ !

ମନରେ ଆଉ କ'ଣ ଭାବି ନବଘନ କାଳିଆକୁ ଟିକେ ସାଉଁଳେଇ ଦେଲା । ଜଳେ ପାଟିକୁ ଅଲ୍ପ ଫାଙ୍କକରି ହସିଦେଲା ଓ ତା' ପାଖ ଲୋକ ମୁହଁକୁ ସମର୍ଥନ ପାଇବା ଆଶାରେ ଅନେଇଲା । ସେ ବି ମୁରୁକିହସା ଦେଇ ଦେଇ ପାଟିଟା ମେଲେଇ ଦେଲା ଯେ, ତାର ପାଟିରୁ ଧୂଆଁଉଦ୍ଗ ଟିକକ ଖସିପଡ଼ିଲା । ସେତକ ଖୋଜିବାପାଇଁ ତଳକୁ ଅନେଇଲା ବେଳକୁ ତାକୁ ପୃଥିବୀଟା ଧୂଳିଆ ଧୂଳିଆ ଗୋଡ଼ମୟ ଦେଖାଗଲା । ସେଇ ଲୋକଟା ନବଘନ ମୁହଁକୁ ଆଉଥରେ ଗୁହିଁ ହସିଦେଲା । ଏଥରକ ତା'ହସ ନବଘନକୁ ଖତେଇ ହେଲାଭଳି ଲାଗିଲା ।

ମେଲଣ ଆରମ୍ଭ ହେଲା ବୋଧେ ।

ଖୁବ ଜୋରରେ ଗୋଟାଏ ଗର୍ଜନ ହେଲା ଯେ, ମହାମଣ୍ଡଳ କମ୍ପି ଉଠିଲା । ପଡ଼ିଆ ଭିତରେ ଆଉ ବାହାରେ ଭର୍ତ୍ତିହୋଇଥାଆନ୍ତି ପୁଲିସି—ଖୁବ୍ ମାଡ଼ୁପରିଆ ପୁଲିସି । ଗାଁଗଣ୍ଡାର ଧେଡ଼େଙ୍ଗା ପେଁଏଣ୍ଟ ଖସିପଡ଼ୁଥିବା ପୁଲିସ ଏମାନେ ନୁହନ୍ତି । ପ୍ରଥମେ ସିନା ମଲା ମୁକୁଟିଆ ହୋଇ ସିଆଡ଼କୁ ଯାଇଥାଆନ୍ତି; ଆସିଲାବେଳକୁ ମୋଟେଇ ଯାଆନ୍ତି । ମୋଟେଇବେନି କାଇଁକି ଯେ ! ପୋଲା ଖାଇଲେ ସମସ୍ତେ ଫୁଲିବେ । ଡରେଇ ଧମକେଇ ଭଲ ଚଳଟାମାନ ନେଇ ଖାଇବେ । ସେଥରକ ସେମିତି, ସରପଞ୍ଚ ଘର କଦଳୀ କାନ୍ଦୀଟା କିଏ କାଟିନେଲା ଯେ, ଗୁଡ଼ିଛେଇକି ଆସି ମତେ ଧମକାଧମକ କରି ମୋ ଅଉଲ କୁକୁଡ଼ା ଦି'ଟାକୁ ନେଇଗଲେ । ତାଙ୍କ ବିରୁଦ୍ଧରେ ଫେରିଆଦ ହବ କିଏ ଲୋ ବୋପା ! ମୂର୍ଚ୍ଛରେ ହାଲଘ ।

ନବଘନର ଭାବନା ଭାଙ୍ଗିଲା ପୁଣି ଥରେ । ପୁଣି ଥରେ ଆକାଶଫଟା ଗର୍ଜନ ଶୁଭିଲା, "ଜିନ୍ଦାବାଦ··· ଜିନ୍ଦାବାଦ··· !" କେହି ଜଣେ ମାଇକ୍ରେ ଧୀରସ୍ଥିର ହେବାକୁ କହୁଥିଲା; ଅଥଚ ସମସ୍ତେ ଥିଲେ ଅସ୍ଥିର, ଉତ୍କଣ୍ଠିତ । ଦି'ତିନଟା ଧୋବଲା ମୋଟା ଲୋକ ସେଇ ଉଁଚ୍ଚ ଜାଗା ଉପରକୁ ଉଠିଲେ । କେତେଟା ଲୋକ ସେଠି କୋଉଠି ଲୁଚି ବସିଥିଲେ କି କଅଣ—ବଡ଼ ବଡ଼

ଫୁଲମାଳ ନେଇ ତାଙ୍କ ବେକରେ ଲମ୍ବେଇଦେଲେ । ଉଠିଲା କରତାଳିର ଜୁଆର । ଘନଘନ କରତାଳି ଖଡ଼ିବାଣ ଫୁଟିଲା ଭଳି କମ୍ପିଲା ।

ନବଘନକୁ ବଡ଼ ଆଶ୍ଚର୍ଯ୍ୟ ଅଥଚ ନୂଆ ନୂଆ ଲାଗୁଥାଏ ଏସବୁ ଦୃଶ୍ୟ । ଏଇ ତା'ହେଲେ ସେଇ ଲୋକ, ଯିଏ ଦୁଷ୍ଟଦଳନ ମେଳା କରୁଛି । ପ୍ରକୃତରେ ଯାର ବଡ଼ ଅସରଣିଆ ପଡ଼ିଛି ନଷ୍ଟେ । ଆହା, କେତେ ବଡ଼ ଲୋକଟା ଉପରେ ଉଚ୍ଛାଟାକୁ ଏତେ ଦଣ୍ଡ । ନବଘନ ଆଉ କିଛି ଚିନ୍ତା କରିବା ପୂର୍ବରୁ ଦେଖିଲା ମେଳଣ ପଡ଼ିଆ ଉପରଟା ସାରା କାଗଜମୟ ହେଇଗଲା । ସେଇ ସିଆଣିଆ ଟୋକା ପିଂଢାଟା କେତେବେଳେ ଫିକର କରି ପଶିଯାଇଛନ୍ତି ପଡ଼ିଆ ଭିତରେ । ସେମାନଙ୍କୁ ଏବେ ଅଲଗା କରିବେ କେମିତି ! ଓଃ, 'କ ଝିଂଝିଟ ନଗେଇଚନ୍ତି ଏଗୁଡ଼ାକ !

ହଠାତ୍ ଗୋଟା ଦି'ଟା ଢେକା ଯାଇ ପଡ଼ିଲା ସେଇ ଉଁଚା ଜାଗାରେ । ଗୋଟାଏ ନଷ୍ଟେ ବାଜିଲା ସେଇ ଫୁଲମାଳିଆ ବାବୁଙ୍କ ଦେହରେ । ଆଉ ଅବସ୍ଥାକୁ ସମ୍ଭାଳେ କିଏ ? ଯୁଯୁରି ଉପରେ ଯୁଯୁରି ବାଜିଉଠିଲା । କଲ୍‌କଲିଆ ହେଇ କିଏ କୁଆଡ଼େ ଦଉଡ଼ିଲେ । ପଛରେ ପୁଲିସ, ଆଗରେ ଅବେଇଜ ପିଲାଏ । କିଏ ଯିବ କୁଆଡ଼େ ! ପୁଲିସ ଯାପ ବାଡ଼େଇଲା ଭଳି ବାଡ଼େଇ ଚାଲିଚି ଯାଆକୁ ନାହିଁ ତାକୁ ; ଯାହାକୁ ପାରୁଚି ପିଟୁଚି । ସମସ୍ତେ ଦଉଡ଼ିବା ଆରମ୍ଭ କରିଦେଇଛନ୍ତି । ମାଇକ୍ ଗର୍ଜୁଚି—'ରହିଯାଅ, ବସିପଡ଼ ଭାଇମାନେ' !

ବେଳ ଅବେଳ ହେଇସାରିଥିଲା ।

ସୂର୍ଯ୍ୟ ମୁହଁ ଲୁଚେଇ ସାରିଥିଲେ ସେଇ ବଡ଼ ବଡ଼ କୋଠାଘର ପଛଆଡ଼େ । ନବଘନ ଜୀବନ ବିକଳରେ ପଡ଼ିଉଠି ଦଉଡ଼ୁ ଦଉଡ଼ୁ ତା' ଜୀବନର ସହଚର କାଳିଆକୁ କୋଉଠି ହଜେଇ ଦେଇଥିଲା ।

କାଳିଆରେ ! ତୁ କୁଆଡ଼େ ଗଲୁ କାନ୍ଦୁରା ସ୍ୱରରେ ପାଟି କରିଥିଲା ନବଘନ ।

ମାସ ମାସ, ବର୍ଷ ବର୍ଷ ଧରି ସେ ଭୁବନେଶ୍ୱର ଗଳିକନ୍ଦିରେ ତା'କାଳିଆକୁ ଖୋଜୁଚି । ଧୂଳିଧୂସରିଆ ପାଦ, ଉଦାସ ମନ; (ଦେଖିଲେ ଚହ୍ନିବାକୁ ମୋଟେ ଅସୁବିଧା ହେବନି) ହତାଶ ଭାବ ନେଇ ସେ ଖୋଜୁଚି । ଯଦି କେହି ସହୃଦୟ ବ୍ୟକ୍ତି ତା'ର କାଳିଆକୁ ଦେଖିଥାଆନ୍ତି, ଦୟାକରି ତାକୁ ତା' ଠିକଣା ବତେଇ ଦେବାକୁ ଅନୁରୋଧ ।



# ଋତୁର ନାମ ପିପାସା

ସୁବଲ ପଟ୍ଟନାୟକ ଆଖିରେ ହତାଶାର ରାଗିଣୀ ।

ଚାକିରିକାଳ ଭିତରେ ଏପରି ଅସୁବିଧା ସେ ଆଉ ଭୋଗ କରିଥିଲେ କି ନା, ମନେ ନାହିଁ । ତେବେ ଭୋଗି ନାହାନ୍ତି ନିଶ୍ଚୟ । ଏମିତି ଅସୁବିଧାରେ ପଡ଼ିଥିଲେ ତାଙ୍କର ମନେ ଥାଆନ୍ତା । ପୁଣି ସେକଥା ମନେ ଥିଲେ, ବର୍ତ୍ତମାନ ପରିସ୍ଥିତିରେ ତାଙ୍କୁ ଏମିତି ହତାଶିଆ ଲାଗୁ ନ ଥାନ୍ତା ।

ପୋଲିସ ଇନ୍‌ସପେକ୍ଟର ସୁବଲ ପଟ୍ଟନାୟକ ।

ଯିଏ ଚାଲିଗଲେ ମୂକ ମଣିଷ ବାଚାଳ ହୋଇ ଉଠନ୍ତି; ତାଙ୍କ ବିଷୟରେ କିଛି ନା କିଛି କହିବାପାଇଁ/ଆଲୋଚନା କରିବାପାଇଁ ପାଟିର ଶବ୍ଦମାନେ ବିଦ୍ରୋହ ଘୋଷଣା କରନ୍ତି;—ତାଙ୍କର ଆଜି ଗୋଟାଏ ଜାଗାରୁ ଆଉ ଗୋଟାଏ ଯାଗାକୁ ଯିବାପାଇଁ ଏତେ ପ୍ରତୀକ୍ଷା । ଇସ୍, ବଡ଼ ଯନ୍ତ୍ରଣାଦାୟକ—

ସବୁଠି ଆଜି ମାର୍ଚ୍ଚମାସର ଭିଡ଼ ।

ଟ୍ରକରେ, ବସ୍‌ରେ ବି ।

ସବୁ ସମୟ ଭଳି ଯେ ମାର୍ଚ୍ଚ ମାସଟା ନୁହେଁ; ଏହା ଏକ ଭିନ୍ନ ପର୍ଯ୍ୟାୟର ଶବ୍ଦ/ସମୟ । ମୋଟ ଉପରେ ଏହା ମାସ ନୁହେଁ, ଋତୁ ନୁହେଁ—ଆଉ ଗୋଟାଏ କିଛି ନିଶ୍ଚୟ । ଗୁଡ଼ାଏ ତିକ୍ତ-ମଧୁର ଭାବନାର ଆଭାସ ମାତ୍ର । ମହୃ-ଲମ୍ବ-ଅଶ୍ରୁ-କରୁଣା-ଧନ-ଯୌବନ-ସମ୍ଭବ-ଅସମ୍ଭବ ଆଦି ଅନେକ କିଛିର ଏକ ମିଶ୍ରିତ ରୂପ ଏଇ ମାର୍ଚ୍ଚ ମାସ ।

ଯୁଆଡ଼େ ଚାହିଁ, ମାର୍ଚ୍ଚମାସ । ରାସ୍ତାରେ, ଘାଟରେ—ଘରେ, ବାହାରେ—ଅଫିସରେ, କ୍ୱାର୍ଟରରେ—ବିଧାନସଭାରେ ଓ କାଗଜପତ୍ରରେ ମହାନ୍ ମାର୍ଚ୍ଚମାସର

ଗୁଞ୍ଜରଣ । ସହରର ବଜାରର ଯାନ୍ତ୍ରିକ ଅସରଳ ପରିବେଶ ଭିତରକୁ ବସନ୍ତ ଆସିପାରେନା; ଖାଲି ମାର୍ଚ୍ଚମାସ ହିଁ ଆସେ । ଆସେ ଅନେକ ଆଶା ନେଇ/ନିରାଶା ଦେଇ ।

ଗଛଲତାରୁ ପୁରୁଣା ପତ୍ରଗୁଡ଼ାକ ପଡ଼ନ୍ତି; ନୂଆ କଅଁଳ ଛନଛନ ପତ୍ର ବାହାର ଆଲୁଅକୁ କଲବଲିଆ ଭାବ ନେଇ ଉଙ୍କିମାରନ୍ତି, ଅନେକ ସବୁଜ ସମ୍ଭାବନା ଧରି । ପେନ୍ଥା ପେନ୍ଥା ଫୁଲ ଧରନ୍ତି ମୁରୁକିହସା । ସେ ଆଡ଼କୁ ନଜର ନ ଥାଏ ମାର୍ଚ୍ଚ ମାସର । ସେ ଦେଖେ, ପ୍ରତିବର୍ଷ ଖାଁଚୁଥିବା ଗ୍ରେଟ ଗ୍ରେଟ ପୋଲ ମରାମତି ହେଉଛି ରାସ୍ତା ଅବରୋଧ କରି—ଧୋଇ ହେଇଯିବାପାଇଁ ଗୋଟିଏ ମାତ୍ର ବର୍ଷାକୁ ଅପେକ୍ଷା ରଖିଥିବା ଚୂନ ଲାଗୁଛି ସରକାରୀ କ୍ୱାର୍ଟରରେ—ସହରୀ ରାସ୍ତାରେ ପିଚୁଟିଣ ଓ ରୋଡ଼ ରୋଲରଙ୍କ ଭିଡ଼ ଜମୁଚି, ଖଣ୍ଡିଆ ରାସ୍ତାରେ ତାଳି ପକାଇବାପାଇଁ—ଲାଇବ୍ରେରୀମାନଙ୍କରେ ଛୁଞ୍ଚା ପୋକଖିଆ ବହି ଗଦାଗଦି ପଶୁଚି ପଟିପକା ଦେଢ଼ଗୁଣ ଦାମ ବଢ଼ାଯାଇ ।

ମାର୍ଚ୍ଚମାସ ବୁଲୁଚି, କଣ୍ଟ୍ରାକ୍ଟରର ଘରଠାରୁ ଓଭରସିଅର/ଇଂଜିନିୟରର, ବଡ଼ବାବୁ/ସାନବାବୁ ଘର ପର୍ଯ୍ୟନ୍ତ । ପୁଣି ଟ୍ରେଜେରୀରୁ ବ୍ୟାଙ୍କ ପର୍ଯ୍ୟନ୍ତ; ବ୍ୟାଙ୍କରୁ ଲକର୍ ପର୍ଯ୍ୟନ୍ତ; ମଦ ମାଂସଠାରୁ ଜଳଖିଆ ଦୋକାନ ପର୍ଯ୍ୟନ୍ତ । ମାର୍ଚ୍ଚମାସ ବେଶି ବୁଲେ କାଗଜରେ । ବେଶି ପୁଣି ବୁଲେ ଟଙ୍କାର ରୂପଧରି । ଏ ହାତରୁ ସେ ହାତକୁ ଡିଏଁ । ବର୍ଷସାରା ଶୋଇ ଯାଇଥିବା ଲୋକଙ୍କର ନିଦଭାଙ୍ଗେ ଏଇ ମାର୍ଚ୍ଚମାସ ।

ବଡ଼ କୌତୁକିଆ/କଞ୍ଜାଳିଆ ଏଇ ମାର୍ଚ୍ଚମାସ ।

ଧର୍ମଘଟ ହରତାଳ ଧ୍ୱଜା ତଳେ ଘେରାଉ ଡକାୟତି/ଲୁଟ୍‌ମାରୁ ବାଲି ଆସିଲା ଭଳି—ଟଙ୍କାଗୁଡ଼ାକ ଖର୍ଚ୍ଚ ହେବାପାଇଁ ମାର୍ଚ୍ଚ ମାସ ନାଁ ଧରି ଆସନ୍ତି । ସବୁ ଅଡୁଆର/ଆଡ଼ମ୍ବରର ମୂଳରେ ଟଙ୍କା । ସେ ଗୁଡ଼ାକ ଟ୍ରେଜେରୀ ଭିତରୁ ପଦାକୁ ଯିବାନିମିତ୍ତ ବ୍ୟାକୁଳ ହୁଅନ୍ତି ଠିକ୍ , ଅସ୍ରାଏ ଅଧିକିଆ ଭଲ ବର୍ଷା ହେଇଗଲା ପରେ ଡେଣାଲଗା ଝିଟିପୋକ ଉଡ଼ି ବୁଲିବା ଭଳି ।

ଖର୍ଚ୍ଚ ଚକ୍ରାରେ ପଡ଼ିଥିବା ଫାଇଲମାନଙ୍କର,—

ମାର୍ଚ୍ଚ ମାସ ହିଁ ତ୍ରାଣକର୍ତ୍ତା ।

କିନ୍ତୁ ପୋଲିସ ବିଭାଗରେ ଏ ମାସର ଦୌରାତ୍ମ୍ୟ ବିଶେଷ କିଛି ନାହିଁ । ବରଂ ଏଇଟାକୁ ଉଦ୍‌ବେଗକାଳ/ଶୃଙ୍ଖଳା ସମୟ କହିବେ ସୁବଳ ପଟ୍ଟନାୟକ । ଏଇ ସମୟରେ ପୋଲିସ ଅଫିସର କାହାର ଖାତିର ପଡ଼ନ୍ତି ନାହିଁ । ଏତିକିବେଳେ ଅନ୍ୟମାନେ ହେଇଥାଆନ୍ତି ବଡ଼, ମହାନ୍ । ଏକୋଇଶି ବର୍ଷ ଚାକିରୀ ଭିତରେ

ଏବେ ଇନ୍‌ସପେକ୍ଟର ପଦକୁ ପ୍ରମୋଶନ ହୋଇଚ ତାଙ୍କର । ସତ କହିବାକୁ ଗଲେ, ଗଡ଼ଜାତ ଅଞ୍ଚଳରେ ସବ୍‌ଇନ୍‌ସପେକ୍ଟର ଥିଲାବେଳେ ଯେଉଁ ଖାତର ଥିଲା/ଯେଉଁ ପଇସା ଥିଲା, ସେ ଉପକୂଳ ଅଞ୍ଚଳରେ ଇନ୍‌ସପେକ୍ଟର ହୋଇ ବ ତାହା ନାହିଁ ।

ହୋଇଚ, ଗାଡ଼ି ଖଣ୍ଡିଏପାଇଁ ଘଣ୍ଟାଏ ଠିଆହେବାକୁ ପଡ଼ୁଲାଣି ।

ଫୁଲବାଣୀର ଖଜୁରିପଡ଼ାରୁ ବଦଳିହୋଇ ଆସିଲାଦିନ ବଳସ୍କନ୍ଦୀ ଠାକୁରାଣୀଙ୍କ ନିକଟରେ ସାଷ୍ଟାଙ୍ଗ ପ୍ରଣାମ ଜଣାଇଥିଲେ ସେ । ଖୁବ ପ୍ରତ୍ୟକ୍ଷ ଦେବୀ ସେ । ଡାକିଲେ କୁଆଡ଼େ 'ଓ' କହନ୍ତି; ଭକ୍ତର ମନସ୍କାମନା ପୂରଣ କରନ୍ତି । ମନାସିକରି ଆସିଥିଲେ ସୁବଳ ପଟ୍ଟନାୟକ ସେଇଠି । ମାଲି ଅଞ୍ଚଳରୁ ବଦଳି ହୋଇ ଉପକୂଳ ଅଞ୍ଚଳ ମାଡ଼ି ନ ମାଡୁଣୁ ଆସିଗଲା ପଦୋନ୍ନତି । ବଳସ୍କନ୍ଦୀଙ୍କ ଉଦ୍ଦେଶ୍ୟରେ ପୁଣି ଥରେ ସେଦିନ ପ୍ରଣତି ବାଢ଼ିଥିଲେ ସେ ।

ମୋଟ ଉପରେ ପଦୋନ୍ନତିଟା ତାଙ୍କ ପ୍ରତି କାହାର ଦୟା ନୁହେଁ, କିମ୍ବା ଅଯଥା ଅନୁକମ୍ପା ନୁହେଁ—ବରଂ ଏହା ତାଙ୍କର ଦୀର୍ଘ କୋଡ଼ିଏ ବର୍ଷ ସାଧନାର ଫଳ । ଜଣେ ଦକ୍ଷ ପୋଲିସ କର୍ମଚାରୀ ହିସାବରେ ତାଙ୍କର ସୁନାମ ଅଛି ଯଥେଷ୍ଟ । ଅନେକଙ୍କୁ ଅକଲରେ ପକାଇ ସେ କାର୍ଯ୍ୟ ହାସଲ କରିଛନ୍ତି ସତ; ମାତ୍ର ନିଜେ ଆଦୌ ଅକଲରେ ପଡ଼ିନାହାନ୍ତି । ଖାଇବା ଓ ଖୁଆଇବା ଯେଉଁ କଳା, ସେଥିରେ ତାଙ୍କର ପାରଦର୍ଶିତା ଥିବାରୁ, ଅନେକ ମତ ଦିଅନ୍ତି—ପଦୋନ୍ନତିଟା ତାଙ୍କର ଦୀର୍ଘଦିନର ପ୍ରାପ୍ୟ ।

ଏଇଟା ସତକଥା ।

ସୁବଳ ବାବୁଙ୍କର ଧାରଣା, ପଦୋନ୍ନତି ହେଲେ କ'ଣ ହେବ, ଆଜିକାଲି ଆଉ ପଦ ମର୍ଯ୍ୟାଦା ମିଳୁନାହିଁ । ଆଗେ ପୋଲିସ ପ୍ରତି ଜନସାଧାରଣଙ୍କର ଯେଉଁ ସମ୍ମାନ/ଭୟ ଥିଲା, ଆଜିକାଲିକା ରାଜନୀତିକ ବନ୍ୟାରେ ସେଗୁଡ଼ାକ ଧୋଇ ହୋଇଯାଇ ବାଲୁଚର ପାଲଟିଗଲାଣି ବହୁ ପରିମାଣରେ । ନଚେତ୍ ମାର୍ଚ୍ଚ ମାସ କ'ଣ, ମେ ମାସ କ'ଣ—ପୋଲିସଙ୍କପାଇଁ ଆଗେ ସବୁ ସମୟ ସମାନ ଥିଲା । ଏ ଦେଶରେ ଅତ୍ୟଧିକ ସ୍ୱାଧୀନତା ଲୋକଗୁଡ଼ାଙ୍କୁ ଓପରମୁହାଁ କରିଦେଲା । ଅବଶ୍ୟ ଜାଗା ଗିନ ମର୍ଯ୍ୟାଦା ଅଛି । ମାଲି ଅଞ୍ଚଳରେ ଥିଲାବେଳେ ଖବର ପଠେଇ ଦେଲେ ଗାଡ଼ି,—ହାତ ଦେଖେଇ ଦେଲେ ଅଟକିଯିବ ଗାଡ଼ି ।

କିନ୍ତୁ ଏଠି/ଏ ଅଞ୍ଚଳରେ···

ଉଦ୍ଧତ ଲୋକଗୁଡ଼ାକ !

ସୁବଳ ପଟ୍ଟନାୟକ ମନେ ମନେ ସ୍ଥିର କଲେ, ନା— ଏ ଲୋକଙ୍କୁ ତାଙ୍କର ଅସଲ ରୂପଟାକୁ ଦେଖେଇ ଦବା ହେବ । ନୂଆ ନୂଆ ସବୁକଥା ହୁଗୁଳା ଛାଡ଼ିଦେଲେ ପଦ୍ମଗ୍ରନ୍ତେ ଆଉ ପାପଙ୍ଗରେ ପକେଇବେ ନ । ଏଥର ସେ କଟକରୁ ଫେରିଲେ, ଦଳବଳଧରି ଗୋଟାଏ ତନଖି ପର୍ବ ଆରମ୍ଭ କରିଦେବେ । ରୋଡ଼ ପରମିଟ୍, ଟ୍ୟାକ୍ସ ଟୋକନ୍, ଡ୍ରାଇଭିଂ ଲାଇସେନ୍ସ ସବୁ···ସବୁକିଛି ଚେକ୍ କରାଯିବ । ଦେଖାଯିବ କେମିତି ଗାଡ଼ି ନ ଅଟକେଇ ପେଁ-ପାଁ କରି ଚାଲିଯିବେ ।

ବଦ୍ମାସ୍ ଦଳ !

ଚିର୍ଦ୍ଦିନ୍କୁ କାଠ ବଳି ଭାବିଲେଣି ।

ଠିକ୍ ଅଛି···

ପ୍ରଚଣ୍ଡ ଖରାର ଛୁଞ୍ଚିକାରେ ସୁବଳ ପଟ୍ଟନାୟକଙ୍କ ପୋଷାକ ଝାଳରେ ଏକପ୍ରକାର ଭିଜିଗଲାଣି । ଆଖିରେ ହତାଶା ଓ କ୍ରୋଧମିଶା ଦୃଷ୍ଟି । ବେଳେ ବେଳେ ତାଙ୍କ ମନ ରାଗରେ ଏପରି ଗୃହ୍ଦୋଳ ଧରୁଥିଲା ଯେ, ହାତରେ ଯଦି ରୋଲ୍ ବାଡ଼ିଟା ଥାଆନ୍ତା, ସେ ଏ ରାସ୍ତାରେ ଯା-ଆସ କରୁଥିବା ଲୋକଙ୍କୁ ପିଟି ପିଟି ଛତୁ ବନେଇ ଦିଅନ୍ତେ । ସ୍ଯାଁ'ଲା ବଦ୍ମାସଗୁଡ଼ାକ;···ସମ୍ମାନ ଦେଇ ଶିଖି ନାହାନ୍ତି ।

ପୁଣି ଟିକିଏ ନରମି ଆସିଲା ବେଳେ ସେ ଭାବନ୍ତି—ଅବଶ୍ୟ ଏ ପାଦଚଲା ଲୋକଗୁଡ଼ାଙ୍କର ଦୋଷ ବା କ'ଣ ? ଖାଲି ଏତିକି, ଏଇ ବାଟ ଦେଇ ଗଲାବେଳେ ଗାରଡ଼େଇ ତାଙ୍କୁ ଚାହାଁନ୍ତି । ଗାଡ଼ିବାଲାଙ୍କ ତୁଳନାରେ ଏଇଟା ସେମିତି କିଛି ନୁହେଁ । ସବୁ ଦୋଷ ଏଇ ଗାଡ଼ିବାଲାଙ୍କର ।

ସ୍ଯାଁ'ଏ ଭିତରେ ଅନେକ ଗାଡ଼ି ହାର୍ଣ୍ଣ ହଲେଇ 'ମନା କରିଦେଇ ଚାଲିଗଲେଣି । କେହି କେହି କୁନ୍ଦୁଳିଆ ହସ ମୁଠା ଦି' ମୁଠା ଫିଙ୍ଗି ଦେଇଯାଇ ତାଙ୍କ କ୍ରୋଧକୁ ଆହୁରି ବଢ଼େଇ ଦେଇଗଲେଣି । ଏଇଟା ତାଙ୍କର ପଦୋନ୍ନତି ଯାତ୍ରା । ନଇଲେ କନେଷ୍ଟବଲ୍ ଦି' ଚାରିଟା ଆଣି ଠିଆକରି ଦେଇଥିଲେ ଏମାନଙ୍କ ଛଇ ଛାଡ଼ି ଯାଇଥାଆନ୍ତା । ତା'ଛଡ଼ା ଥାନା ଗାଡ଼ିଟା ନେଇ ଯାଇଥିଲେ ଚଳିଥାଆନ୍ତା ଯେ—ନୂଆ ଜାଗା, ନୂଆ ପଦୋନ୍ନତି; ଦନାକେତେ ଯାଉ । ସହି ସମ୍ଭାଳି ସବୁ କରାହେବ ।

ସେଥିରେ ପୁଣି ରାଜନୀତିକ ହାଓ୍ବା ବଦଳୁଛି ।

କେତେବେଳେ କୋଉକଥା ।

ମନ ଭିତରୁ ଉହୁଙ୍କି ଉଠିଲା ଶକ୍ତି-ସାମର୍ଥ୍ୟ ଓ ପାଗଳା ପଣିଆର ଭାବ; ସଞ୍ଚାରିଗଲା ତାହା ସାରା ଶରୀରକୁ । ନିଜକୁ ନିଜେ ସେ ବୁଝେଇଲେ—ରହିଯା,

ରହିଯା । କୋଉ ପାଣି କୋଉଆଡ଼େ ଯାଉଚ, ଦେଖ୍ । ଏଇଭଳି ଏକ ଉତ୍ଫୁଲ୍ଲିତ ଭାବନାମୟ ମୁହୂର୍ତ୍ତରେ ଗୋଟିଏ ସୁନ୍ଦର ଲାଲ ରଙ୍ଗର ବିଦେଶୀ ଗାଡ଼ି ଦିଶିଗଲା କିଛି ଦୂରରୁ । ଏଥର ଅଟକିବାପାଇଁ ହାତ ଦେଖାଇବା ସଙ୍ଗେ ସଙ୍ଗେ ରାସ୍ତା ମଝାମଝି ଆସି ଛିଡ଼ା ହୋଇଗଲେ ଇନ୍‌ସପେକ୍ଟର ସୁବଳ ପଟ୍ଟନାୟକ । ଗାଡ଼ି ଅଟକିଲା କଡ଼ା ବ୍ରେକ୍ ଦେଇ ।

"ଡ୍ରାଇଭିଙ୍ଗ୍ କାଗଜପତ୍ର···ଆର. ସି. ବୁକ୍"···

ସୁବଳ ପଟ୍ଟନାୟକଙ୍କ ଏ କଥାଗୁଡ଼ାକ ଡ୍ରାଇଭରକୁ ଅପ୍ରାସଙ୍ଗିକ ମନେ ହେଲା କି କ'ଣ—କେଜାଣି; ସେ ହସିଦେଲା । କାଗଜପତ୍ର ବାହାର ନ କରି, ସାମ୍ନା ସିଟ୍‌ରେ କେହି ନ ଥିବାରୁ, ସେ ପଛସିଟ୍ ଆଡ଼କୁ ଚାହିଁଲା । ଏବଂ ସେଠୁ ଆଖି ଫେରାଇ ପୁଣି ଥରେ ଚାହିଁଲା ପୋଲିସ୍ ଇନ୍‌ସପେକ୍ଟରଙ୍କ ଆଡ଼କୁ । ସେତେବେଳକୁ ସୁବଳ ପଟ୍ଟନାୟକ ରାଗରେ ଜଳୁଥିଲେ ଡ୍ରାଇଭରର ହସ ଦେଖି । ତାଙ୍କ ମୁହଁ ଉପରେ କେହି ହସିଦେବା ଏଇ ପ୍ରଥମ । କ'ଣ କରାଯାଇ ପାରିବ ଏ ଅବସ୍ଥାରେ । ବୋଧେ ଏ ଉପକୂଳ ଅଞ୍ଚଳ ମାଟି ଏଇୟା ।

ଡ୍ରାଇଭର ମୁହଁରେ କିଛି କଥା ନାହିଁ । ମାତ୍ର ଭାବ ଅଛି—ଏକ ଅବହେଳାର ଭାବ; ବେଖାତିର ବେପରୁଆ ଭାବ । ସେ ପକେଟରୁ ରୁମାଲ କାଢ଼ି ମୁହଁ ପୋଛିବାକୁ ଲାଗିଲା । ଅସହ୍ୟ···ଅସହ୍ୟ ସେ ଯନ୍ତ୍ରଣା ସୁବଳବାବୁଙ୍କ ପାଇଁ । ତଥାପି ସେ ନିଜକୁ ସମ୍ଭାଳି ନେବାକୁ ଚେଷ୍ଟା କଲେ । ଆଉ କିଛି କଥା/ଘଟଣା ଘଟିବା ପୂର୍ବରୁ ହାତରେ ଧରିଥିବା ପ୍ୟାକେଟ୍‌ଟାକୁ ସେ ବଢ଼ାଇଦେଲେ ଡ୍ରାଇଭର ହାତକୁ ।

'ରଖ୍ ସେପଟେ ଏଇଟାକୁ,···ମୁଁ ଯିବି' ।

ସତେ ଯେମିତି ଅନେକ ଗୁଡ଼ାଏ ଆଲୋଚିତ ହେବା କଥା ଅନାଲୋଚିତ ରହିଗଲା । ଅନେକ କହିବା କଥା ଅନାବଶ୍ୟକ ମନେ ହେଲା ଦୁହିଁଙ୍କୁ । ପରସ୍ପର ପରସ୍ପରର କଥା ବୁଝିଗଲେ ।

···'ପୋଲିସବାବୁ ସହରକୁ ମାଗଣା ଯିବାକୁ ଚାହାନ୍ତି; ଇଏ ତାଙ୍କର ଗୋଟାଏ ଚାଲ୍' ।

···'ଡ୍ରାଇଭର ତାଙ୍କୁ ଗାଡ଼ିରେ ନେଇଯିବାକୁ ସମ୍ମତ । ଅତି ଚତୁରତାର ସହିତ ସେ ତାଙ୍କ ମନ କଥା ଜାଣି ପାରିଚି । ସେଥିପାଇଁ ସେ ହସୁଚି କୌଣସି ଉତ୍ତର ନ ଦେଇ' ।

···'ଯିବ ଯଦି ଶୀଘ୍ର ଆସ; ଆଉ ଡେରି କରନା' ।

ଡ୍ରାଇଭର ବସିବାପାଇଁ ଡୋଅର୍ ଖୋଲିଦେଲା ।

ଭିତରକୁ ଆସି ଆଶ୍ୱସ୍ତ ହେଲେ ସେ । ମାର ଗୁଲ୍ ହୋ ଏ ମାର୍ଚ୍ଚ ମାସକୁ । ଘୁରଆଡ଼େ ଖାଲି ହରଲୁଟ୍ । ମଣିଷକୁ ଟିକେ ସୁସ୍ଥରେ ଯିବା-ଆସିବା କରିବାକୁ ସୁଯୋଗ ମିଳୁ ନାହିଁ । ସବୁ କାମ ଏଇ ସମୟକୁ ପକେଇ ରଖିଥାଆନ୍ତି କାହିଁକି କେଜାଣି । ଏଇ କାମପାଇଁ ଏସବୁ ଟଙ୍କା ପଇସାକୁ ଆଗରୁ ବରାଦକରି ଦେଇଥିଲେ ତ ଚଳି ଥାଆନ୍ତା । ମାର୍ଚ୍ଚ ଏକତିରିଶ ରାତି ଅଧ ପର୍ଯ୍ୟନ୍ତ, କଣ୍ଠାଗତ ହେବାଯାଏ, ସବୁ ଘଟଣା କାହିଁକି ପଡ଼ି ରହେ, ତା'ର କାରଣ ହିସାବି ଇନ୍‌ସପେକ୍ଟର ସୁବଳ ପଟ୍ଟନାୟକଙ୍କ ମୁଣ୍ଡରେ ପଶି ପାରୁ ନଥିଲା ।

ରାସ୍ତାରେ ଠାଏ ଠାଏ ମାର୍ଚ୍ଚ ମାସ ସୃଷ୍ଟି କରିଛି ଦ୍ୱିତୀୟ ବିଶ୍ୱଯୁଦ୍ଧର ଦୃଶ୍ୟ । ଭଙ୍ଗା ଯାଉଛି । ଗଢ଼ା ଯାଉଛି । ଦଳେ ଦଳେ ଝାଳୁଆ ମଣିଷ କାମରେ ଲାଗିଛନ୍ତି; ମାଟି ଖୋଳାହେଇ ରାସ୍ତାର ଦୁଇପଟେ ଗଦା ହେଉଛି । ଇଟା, ସିମେଣ୍ଟ ଓ ଲୁହା ଛଡ଼ର ପ୍ରଦର୍ଶନୀଟିଏ ଜମିଛି । ପାଟିତୁଣ୍ଡ ହୋ-ହଲ୍ଲା । କାମକଲା ସ୍ତ୍ରୀ ଲୋକମାନଙ୍କର ଚୁପୁଡ଼ା ଚୁପୁଡ଼ା ହସ ବିଞ୍ଚିହେଇ ପଡ଼ୁଛି ସେଇ ଖରାଧୂଆ ରାସ୍ତା ଉପରେ । ମୁଖ୍ୟ ରାସ୍ତା ଅବରୋଧ ହେଇ ଧୂଳିଆ କଚ୍ଚା ରାସ୍ତାରେ ମଟର କାର୍ ବୁଲି ବୁଲି ଯିବାକୁ ନିର୍ଦ୍ଦେଶ ଦିଆଯାଇଛି । ସେଇଭଳି ରାସ୍ତା ଦେଇ କାର୍ ଗଲାପରେ ଡ୍ରାଇଭର୍ ପ୍ରତିଥର ନିଜ ମୁହଁକୁ/ଆଖିକୁ ପୋଛୁଛି ତା'ର ରୁମାଲରେ । ଅଥଚ ସେଇ ସ୍ତ୍ରୀଲୋକମାନେ ମୁହଁ ପୋଛୁ ନାହାନ୍ତି ଯେଉଁମାନଙ୍କର ମୁହଁ ସଫେଇଥିବା ହେବା କଥା ।

ସୁବଳ ପଟ୍ଟନାୟକ ଭିତରେ ନରମି ଯାଇ, ମୋଡ଼ି ମକଚି ହେଇ, ଶୋଇ ପଡ଼ିଥିବା ଅହଂଟି ହଠାତ୍ ନାଗସାପ ଭଳି ଫଣା ଟେକି ଉଠିଲା । କି ଭଳିଆ ଲୋକଟା ମ ଇଏ ! ଟିକେ ସଣୁଣା ନାହିଁ ' ପୋଲିସ ଅଫିସର ଜଣେ ପାଖରେ ବସିଛି; ଗୋଟାଏ ହାତ ଗୁଡ଼ିଦେଇ ଗାଡ଼ି ଚଳଉଛି; ଆର ହାତରେ ସଉକିଆ ରୁମାଲ ଧରିହେଇ ମୁହଁ ପୋଛି ଚାଲିଛି, ଯେ ଚାଲିଛି । ନାହିଁ ଯଦି କିଛି ଗୋଟାଏ ହେଇଯାଏ,—ତୋର ଡ୍ରାଇଭର ଜୀବନଟା ସିନା ମୂଲ୍ୟବାନ୍ ନୁହେଁ; କିନ୍ତୁ ଗୋଟାଏ ପୋଲିସ ଅଫିସରର ଜୀବନ ତ...

ହଁ, ମୂଲ୍ୟବାନ୍ ନିଶ୍ଚୟ...

ତା'ଠୁଁ ଢେର ମୂଲ୍ୟବାନ୍ ।

'ହେଇଏଇ ! ଭଲ ଭାବେ ଗାଡ଼ି ଚଲା । ଏମିତି ହାତଗୁଡ଼ି ମେଜିକ୍ ଦେଖଉଛୁ କ'ଣ ? ନୂଆ ଡ୍ରାଇଭରଙ୍କ ଲାଇସେନ୍‌ସ କରିଚୁ କି ରେ ? ଜାଣିଚୁ, ତୋ ଲାଇସେନ୍‌ସ ରଦ୍ଦ କରିଦେବି'—

ଏଥରକ ଶବ୍ଦକରି ହସି ଉଠିଲା ଡ୍ରାଇଭର୍ । ବଡ଼ ବିରକ୍ତିକର ସେ ହସ । ରାଗରେ ମୁହଁ ଲାଲ ପଡ଼ିଗଲା ସୁବଳ ପଟ୍ଟନାୟକଙ୍କର । ତାଙ୍କର ଇଚ୍ଛା ହେଉଥିଲା, ଛାଏ ଛାଏ ଦେଇଟା ଜମେଇଦେଇ ହସିବା କାରଣଟା ନିକାଲି ଆଣନ୍ତେ ସେ । ଥଟ୍ଟା ଲାଗିଛି, ନାଇଁ ? ବଜାର ଲଫଙ୍ଗା କାହାଁକା ''! କହି କାହିଁକି ହସୁଥିଲୁ, କହି—

ସୁବଳ ପଟ୍ଟନାୟକ ମନେ ମନେ ଭାବି ଯାଉଥିବା କଥାକୁ ବଚନରେ ରୂପଦେବାକୁ ସମୟ ପାଇ ନଥିଲେ । ସେ କିଛି ଗୋଟା କହିବା ପୂର୍ବରୁ ଗୋଟାଏ ସ୍ୱର ଶୁଭିଲା, 'କୋଉ ଥାନା ଦାୟିତ୍ୱରେ ଅଛ କି ବାବୁ ?—କୋଉଠିକି ଯିବ ?'

ମୁହଁ ବୁଲାଇ ଏଥର ପଛକୁ ଚାହିଁଲେ ସୁବଳ ପଟ୍ଟନାୟକ । ଏ ଯାବତ୍ ଗାଡ଼ିର ପଛପଟେ କିଏ ଅଛନ୍ତି କି ନାହିଁ, ଦେଖିବାକୁ ବେଳ ପାଇ ନଥିଲେ ସେ । କେମିତି ଅବା ଦେଖିବେ ? ଏ ଉଦ୍ଧତ ଡ୍ରାଇଭରଟା ତ ତାଙ୍କ ମୁଣ୍ଡ ଗରମକରି ଦେଇଥିଲା । ସବୁ କଥାର/କାମର ଗୋଟାଏ ସୀମା ଅଛି । ସୀମା ଅତିକ୍ରମ କରିଗଲେ ଯେ କୌଣସି ଲୋକ ବିଗିଡ଼ିବ ଏବଂ ବିଗିଡ଼ିଗଲା ପରେ ମଣିଷ ସାଧାରଣତଃ ଯାହା କରିବାର କଥା, ତାହା କରିପାରେ ନାହିଁ; ବରଂ ସେଥିରେ କିଛି ବିଭ୍ରାଟ ଦେଖାଦିଏ ।

ପଛକୁ ଚାହିଁଦେଲା ପରେ ସୁବଳ ପଟ୍ଟନାୟକଙ୍କର ଓଠରେ ଗୋଟାଏ ହସ ପଶିଗଲା ହାବୁକା ମାରି ।…ଏ ଚାହୁଁଆ ଲୋକଟାକୁ ତ କୋଉଠି ଦେଖିଛି… ବହୁବାର ଦେଖିଛି । ବୋଧେ ଫଟୋରେ ଦେଖିଛି; କିନ୍ତୁ ଇଏ ତ ଖାଣ୍ଟି ଫଟୋ ମଣିଷ ନୁହେଁ । ପ୍ୟାରେଡ଼ ପଡ଼ିଆରେ ଦେଖିଛି କି ? ମାତ୍ର ଇଏ ତ ଉଚ୍ଚ ପୋଲିସ କର୍ମକର୍ତ୍ତା ନୁହନ୍ତି । ସ୍ୱାଙ୍ଗର ସାମ୍ନା ମୁଣ୍ଡବାଳ ଟିକେ ଚନ୍ଦା । କଥାଗୁଡ଼ାକ ଟାଆଁ ସିଆଁ—ଟାଆଁ ସିଆଁ । ବୟସ ବିଦୀର୍ଣ୍ଣ ଦେହରେ ଗୌରବର୍ଣ୍ଣ ଏବେ ବି ଦୀପ୍ତିମାନ । ଖାଇଗଲା-ଖାଇଗଲା ଆଖିରେ ଚଷମା । ତା' ଭିତରୁ ଶିକାରୀ ଜନ୍ତୁର ଗତିବିଧି ଲକ୍ଷ୍ୟ କଲା ଭଳି ସେ ଦେଖୁଛି ସୁବଳ ପଟ୍ଟନାୟକଙ୍କୁ ।

ଛବିରେ ଦେଖିଥିବା ମଣିଷ ଭଳି ମଣିଷଟିଏ ।

ଚାହିଁ ରହିଛନ୍ତି ସେ ।

ଆଖିରେ ଚହଲିଲା ଚହଲିଲା ଭାବ । ଲୋକଟାକୁ ସେ ବହୁଥର କେଉଁଠି ଦେଖିଛନ୍ତି, ଅଥଚ ଏବେ ନାଆଁ ମନେ ପଡୁନି । ଜିଭ ଆଗରେ ଥିବା ନାଆଁଟା । ଇଏତ…, ହଠାତ୍ ବିବର୍ଣ୍ଣ ହୋଇଆସିଲା ସୁବଳ ପଟ୍ଟନାୟକଙ୍କ ମୁହଁଟା । ଦେହସାରା କମ୍ପିଗଲା ବୁନ୍ଦା ବୁନ୍ଦା ଝାଳ । ଗାଡ଼ିରେ ବସିବା ପରେ ପବନ ବାଜି

ଯେଉଁ ଝାଳ ଶୁଖି ଯାଉଥିଲା, ତାହା ପୁଣି ଆକସ୍ମିକ ଭାବେ ମୁହଁ ଦେଖାଇଲେ ଅମାନିଆହୋଇ । ପାଟି ଅଠା ଅଠା ହୋଇଗଲା ତାଙ୍କର…

'ପୂର୍ବତନ ମୁଖ୍ୟମନ୍ତ୍ରୀ'…

ଇଏ ଯେମିତି କେତୋଟା ଶବ୍ଦ ନୁହେଁ, କେତୋଟା ମାରାତ୍ମକ ଅସ୍ତ୍ରଶସ୍ତ୍ର । କ୍ଷଣକରେ ଏଇ ଶବ୍ଦମାନେ ଭେଦ ଯାଉଛନ୍ତି ତାଙ୍କର ସାରା ଦେହରେ/ରକ୍ତରେ—ଶିରା ପ୍ରଶିରାରେ । ଉଚ୍ଚାରଣର ଆବଶ୍ୟକତା ନାହିଁ । ଅନୁଚ୍ଚାରିତ ଭାବେ ସେଗୁଡ଼ାକ ଉଚ୍ଚାରିତ । …'ପୂ-ର୍ବ-ତ-ନ- ମୁ-ଖ୍ୟ-ମ-ନ୍ତ୍ରୀ-'…ଏବେ ବିରୋଧୀଦଳର ମୁଖ୍ୟ କର୍ଣ୍ଣଧାର । ପରିବର୍ତ୍ତିତ ରାଜନୀତିକ ଆବହାଓ୍ୱାର ରାଷ୍ଟ୍ରୀୟ ସୂତ୍ରଧର ।

ଇସ୍, କେଡ଼େ ବଡ଼ ଭୁଲ୍ ହୋଇଗଲା ସତେ ! ଗାଡ଼ିରେ ବସିବା ପୂର୍ବରୁ ଅନ୍ତତଃ ଥରକପାଇଁକି ପଛକୁ ଚାହିଁ ଥାଆନ୍ତେ କି ସେ । ନିକଟ ଭବିଷ୍ୟତର ଅଭାବନୀୟ ଧୂମାଳ ଦିଶିଗଲା ସୁବଳ ପଟ୍ଟନାୟକଙ୍କ ଆଖି ଆଗରେ । …'ପୋଲିସ କ୍ଷମତାର ଅପବ୍ୟବହାର'…ବିଧାନସଭାରେ ଅଗ୍ନିଗର୍ଭା ଭାଷଣ…ଖବର କାଗଜରେ ବଡ଼ ବଡ଼ ଅକ୍ଷରରେ ବାହାରିବ, 'ପୋଲିସ ଅଫିସରଙ୍କ…'

ପାଟିରୁ ଆଉ ଶବ୍ଦ ଉଚ୍ଚାରିତ ହେଲା ନାହିଁ ସୁବଳ ପଟ୍ଟନାୟକଙ୍କର । ଆଖି ତାଙ୍କର ଫେରୁନାହିଁ ସେଇ ଛବିର ମଣିଷଟି ଉପରୁ । ପିଲାମାନଙ୍କ ପାଠ ବହିରେ ଥିବା ଛବି,…ସେତେବେଳର ସବୁଠାରୁ ଅଧିକ ଦରକାରୀ ମଣିଷ, ଏବେ କ୍ରମଶଃ ଅଦରକାରୀ ହୋଇ ପଡ଼ୁଛନ୍ତି । ଭବିଷ୍ୟତରେ ଦରକାରୀ ହୋଇ ପାରନ୍ତି ; ନ ହୋଇ ପାରନ୍ତି ମଧ୍ୟ । କିନ୍ତୁ ଇଏ ତ ମଣିଷ ନୁହଁ,—ସତେକି ଗୋଟାଏ ମହାବଳ ବାଘ ।

ଅନେକ କଥା/ଅନେକ ଦୃଶ୍ୟ

ଅତୀତରୁ ଯୁଅ ମୁହଁର ପତର ଭଳି ଭାସି ଆସୁଚି ବର୍ତ୍ତମାନ ପର୍ଯ୍ୟନ୍ତ । ଆଗରେ ବାଘକୁ ଦେଖି, ନିଶ୍ଚିତ ମୃତ୍ୟୁ ଜାଣି ସ୍ତବଧ ହୋଇଯାଇଥିବା ବାଛୋଇ ଭଳି, ସୁବଳ ପଟ୍ଟନାୟକ ଚାହିଁ ରହିଛନ୍ତି ତାଙ୍କର ଆଡ଼େ । ଆଖିର ପଲକ ପଡ଼ୁଚି କି ନା, ଜାଣି ହେଉନି । ଆଖିରେ ଆଖିଏ ଅତୀତ…

ଗଛରେ ନାନା ଜାତିର ଫୁଲ ଫୁଟିଲେ ମାର୍ଚ୍ଚ ମାସର କି ଯାଏ ?—କାଗଜରେ ଫୁଲ ଫୁଟିଲେ ହେଲା । ବିରୋଧୀ ଦଳ ଓ ଖବର କାଗଜମାନେ ଯେତେ ଗର୍ଜିଲେ କ'ଣ ହେବ, ପଛରେ ଶାସକ କଳର ସମର୍ଥନ ଥିଲେ ହେଲା । ସେତେବେଳେ ସମର୍ଥନ ଥିଲା ଶାସକଙ୍କର ଏବଂ ଶାସନ କଳର । ମୁଖ୍ୟମନ୍ତ୍ରୀ ହିସାବରେ ସେ ଥିଲେ ଭାରି କଡ଼ା ମିଜାଜ୍‌ର ଲୋକ । ବଟବୃକ୍ଷର ଛାୟାରେ ଅନ୍ୟ ବୃକ୍ଷ ଉଠିଇ ନ ପାରିବା ସଦୃଶ ବିରୋଧୀ ଦଳ ମୁଣ୍ଡ ଟେକି ପାରୁ ନ ଥିଲେ ସ୍ୱାଙ୍କ ଆଗରେ ।

ଶାସନ କର୍ତ୍ତା; ଶାସନ କଳ ସଜାଗ—

ପୋଲିସ ବି ହୁସିଆର ।

ସବୁ କଥା ନେଇଆଣି ଯୋଗ ହେଉଥିଲା ସେ ସମୟରେ । ରାଜନୀତିକ ଜୀବନ ଘନ କୁହୁଡ଼ିର ବନ ପରି ସଂଶୟାଚ୍ଛନ୍ନ ନ ଥିଲା । ଶାସନ କଳର କର୍ଣ୍ଣଧାରମାନେ ଥିଲେ ସରକାରୀ କର୍ମଚାରୀଙ୍କ ଉତ୍ସାହଦାତା । ପୋଲିସ କ୍ରୀଡ଼ା-ପ୍ରତିଯୋଗିତାରେ କ୍ଷୁ ନ୍ତ ନିକ୍ଷେପ ଓ ବନ୍ଧୁକ ଚାଳନାରେ ପ୍ରଥମହୋଇ ସୁବଳ ପଟ୍ଟନାୟକ ପୁରସ୍କାର ଗ୍ରହଣ କରିଥିଲେ ଏଇ ମହାପୁରୁଷଙ୍କଠାରୁ । କେନ୍ଦୁଝରରେ ଯାଙ୍କ ବିରୁଦ୍ଧରେ ହୋଇଥିବା ଚାଷୀ ଆନ୍ଦୋଳନର ସତ୍ୟତା ଓ ସତର୍କତା ଜାଣି ଆସିବାକୁ ସ୍ୱତନ୍ତ୍ର ଦୂତ ରୂପେ ପଠାଯାଇଥିଲା ସୁବଳ ପଟ୍ଟନାୟକଙ୍କୁ ।

ମୋଟ ଉପରେ—

ସବୁ କଥା ନେଇଆଣି ଯୋଗ ହେଉଥିଲା ସେତେବେଳେ ।

କେବଳ ଏତିକି ନୁହେଁ,—ତାଙ୍କର ଆହୁରି ଅନେକ ସ୍ମୃତିମୟ ଘଟଣା ସହିତ ଇଏ ବିଜଡ଼ିତ । ଚଳମାନ ଗାଡ଼ି ଭିତରେ ସବୁ ଘଟଣା ଚଳମାନ ହୋଇ ଯାଉଛନ୍ତି । ଠିକ୍‌କରି ମନେ ପଡୁନାହାନ୍ତି ଘଟଣାମାନେ । ଚିତ୍ତ ବୈକଲ୍ୟ ଯୋଗୁଁ ଚିନ୍ତାରେ ବି ବିଭ୍ରାଟ ଘଟୁଚି ତାଙ୍କର । ମାଗଣା ପିବାର ମନୋବୃତ୍ତିରୁ ପିନା ଏତେ ବଡ଼ ଦୁର୍ଘଟଣା ଘଟିଗଲା । କିନ୍ତୁ ଏବେ ଉପାୟ କ'ଣ ? କି ଉତ୍ତର ଦେବେ ସେ ଭୂତପୂର୍ବ ମୁଖ୍ୟମନ୍ତ୍ରୀଙ୍କୁ

ଗଛରୁ ପାଚିଲା ପତ୍ର ଓ ଫୁଲମାନେ ଚଳନ୍ତା କାର୍ ଉପରେ ଖସି ପଡ଼ୁଥାନ୍ତି ଏବଂ କାହାକୁ କେଉଁଠି ଧରିଦେବା ପୂର୍ବରୁ ପବନରେ କଲ୍‌କଲିଆ ହୋଇ ଉଡ଼ି ଯାଉଥାନ୍ତି ଦୂରକୁ । ସୁବଳ ପଟ୍ଟନାୟକଙ୍କର ମନର ଭାବନାମାନେ ଝଡ଼ି ପଡ଼ୁଥାଆନ୍ତି ଏବଂ ତାଙ୍କୁ ନିର୍ଦ୍ଦିଷ୍ଟ ସୀମାରେ ପହଞ୍ଚାଇବା ପୂର୍ବରୁ ଖସି ପଳାଉଥାଆନ୍ତି ଦୂରକୁ । କି ଉତ୍ତର ଦେବେ ସେ ତାଙ୍କୁ କୋଉଠି ଓହ୍ଲାଇବେ ଭୁଲିଗଲେଣି ସେ । ଠିକ୍ ଭୁଲି ନାହାନ୍ତି ଯେ,—କେବଳ ମାତ୍ର କହିବାକୁ ଭୁଲି ଯାଇଛନ୍ତି ଏଇ କଥାଟାକୁ ।

ଡ୍ରାଇଭର ଗାଡ଼ି ଚଳେଇଚି ସେମିତି । ମଝିରେ ମଝିରେ ସୁବଳବାବୁଙ୍କୁ ଚାହିଁଦେଇ ପୂର୍ବଭଳି ମୁହଁ/ଆଖିରେ ରୁମାଲ୍ ବୁଲେଇ ନେଉଚି । ବେଳେ ବେଳେ ସେ ହସୁଚି ଏବଂ କ'ଣ କହୁଚି ଶୁଣାଯାଉନି ତାଙ୍କୁ । ସମ୍ଭବତଃ ଏକ ଶବ୍ଦହୀନ ସାମ୍ରାଜ୍ୟରେ ସେ ଏବେ ବିଚରଣ କରୁଛନ୍ତି । ବଡ଼ ବିଚିତ୍ର ଏ ପରିସ୍ଥିତି ।

ଡ୍ରାଇଭରକୁ କିଛି କହିବା/ଧମକ ଦେବା ପରିସ୍ଥିତିରେ ସେ ଏବେ ଆଉ ନାହାନ୍ତି । ସେଇ ଡ୍ରାଇଭର ହଠାତ୍ ତାଙ୍କ ଦୃଷ୍ଟିରେ ପାଲଟି ଯାଉଚି ମହାନ୍ ଚରିତ୍ର—/ଶିବଙ୍କର ସାପ । ତେଣୁ ସେ ଖୁବ୍ ଭଲ; ଭଲ ଗାଡ଼ି ଚଳାନ୍ତି; ଗାଡ଼ି ଚଳାଇବାରେ ତାଙ୍କର ଏପରି ଦକ୍ଷତା ଯେ, ସେ ଗୋଟାଏ ହାତରେ ରୁମାଲରେ ମୁହଁ ପୋଛି ଅପର ହାତରେ ସୁନ୍ଦରଭାବେ ଗାଡ଼ି ଚଳେଇ ନେଇଯାଇ ପାରନ୍ତି । ସୁନ୍ଦର, ଅତି ସୁନ୍ଦର ! ଏସବୁ ଦକ୍ଷତାର ଫଳ । ନଚେତ୍ ଏଭଳି ଗାଡ଼ି ଚଳାଇବା ସମସ୍ତଙ୍କ ପକ୍ଷେ ସମ୍ଭବ ନୁହେଁ ।

ସୁବଳ ପଟ୍ଟନାୟକଙ୍କ ଦେହ ବାମ୍ଫେଇ ଉଠୁଚି । ଗୋଟାଏ ଅର୍ଗଳ ଭିତରେ ପଶି ଆବଦ୍ଧହୋଇ ରହିଥିବା ପଶୁଭଳି ସେ ଛଟପଟ ହେଉଛନ୍ତି । ମନରେ ଚିନ୍ତା, ଖସିଯାଇ ପାରନ୍ତେ କି କୌଣସିବାଟେ । ପରିସ୍ରା ଲାଗନ୍ତା କି ଏ ମୁଖ୍ୟମନ୍ତ୍ରୀଙ୍କ ! ସେତିକବେଳେ ସେ ଖସି ପଳାନ୍ତେ । ଆଉ ନାଁ-ଗାଁ-ଠିକଣା ଜଣାଇବାକୁ ପଡ଼ନ୍ତାନି । ନହୁବା ହଠାତ୍ କାର୍ ଡ଼ୋଅର୍‌ଟା ଖୋଲିଦେଇ ଡେ଼ଇଁ ପଡ଼ନ୍ତେ କି ସେ,—ଫେରର ବା ରାଜନୈତିକ ବନ୍ଦୀ ଧରିବା ଦୃଶ୍ୟ ସୃଷ୍ଟିକରି ।

କିନ୍ତୁ ସେଠି କିଛି ପ୍ରଶଂସା/କିଛି ପାଇବାର ପ୍ରତିଶ୍ରୁତି···

ଏଠି କିନ୍ତୁ କିଛି ହରେଇବାର ପ୍ରତ୍ୟାଶା···

ଆଗରେ ଭୁବନେଶ୍ୱର···; ହେଇ ତ ରସୁଲଗଡ଼ ଗଲା । ପଛରେ କାହିଁ କେତେ ଦୂରରେ ସେ ଛାଡ଼ି ଆସିଲେଣି ତାଙ୍କ ଗନ୍ତବ୍ୟ ସ୍ଥଳ—କଟକ ସହର । ମନଟା ସାରା କାରୁଣ୍ୟମୟ ହେଇଗଲା ସୁବଳ ପଟ୍ଟନାୟକଙ୍କର । କୋଉଠିକି ନଉଚନ୍ତି ସେ ? କାହାକୁ ନେଇ ଧରେଇ ଦେବେ କି ? କିନ୍ତୁ ଖସିବାର ବାଟ ନାହିଁ !

ଜୀବନରେ ସମସ୍ୟା ଆସୁ ;—

କିନ୍ତୁ ଏଭଳି ସମସ୍ୟା କାହା ଜୀବନରେ ନ ଆସୁ ।

ଆଗରେ ରେଲଷ୍ଟେସନ ଛକ । କାର୍‌ର ଗତି ମନ୍ଥର ହେଲା । କେହି ଜଣେ ହାତ ଦେଖାଇଲା—ଓଜନଦାର୍ ଦଳୀୟ ଲୋକ । ବୋଧେ କିଛି ସମ୍ବାଦ ଦେବେ । ଆଉ କିଛି ଚିନ୍ତା କରିବାର ବେଳ ନାହିଁ ସୁବଳ ପଟ୍ଟନାୟକଙ୍କର । ମନ ଭିତରେ କ୍ଲାଉଡ଼ୁଆର ଡ଼ାକ—ଏଇ ସୁପ୍ରଭାତ; ଉଠ୍-ଉଠ୍ । ଗାଡ଼ି ଅଟକୁ ନ ଅଟକୁଣୁ ସେ ଡ଼ୋଅର୍ ଖୋଲି ଧାଇଁଲେ···ଧାଇଁଲେ ଅଣନିଃଶ୍ୱାସୀ ହେଇ । ପଛରୁ କାହାର ପାଟି ଶୁଭୁଚି—'ତମ ପ୍ୟାକେଟ୍ ! ପ୍ୟାକେଟ୍ ରହିଗଲା'

ଶୁଣି ମଧ୍ୟ ଶୁଣୁ ନାହାନ୍ତି ସେ ।

ଶୁଣି ସତ୍ୟାସତ୍ୟ ବିଚାର କରିବାର ଅବସର ନାହିଁ ସୁବଳ ପଟ୍ଟନାୟକଙ୍କର । ସେ ଧାଇଁଛନ୍ତି—ପଛରେ ଅନେକ ହସ; ପୋଲିସ ଅଫିସର ଜଣେ ବିନା କାରଣରେ ଧାଉଁଚ;—ହସ ଉପରେ ହସ । ଦଉଡ଼ିବାବେଳେ ସୁବଳ ପଟ୍ଟନାୟକ ମନେ କରୁଥିଲେ—ପଛରେ ତାଙ୍କର ଅନେକ ଧାବମାନ ମଣିଷ; ସମସ୍ତଙ୍କ ମୁହଁରେ 'ଧର-ଧର' ଧ୍ୱନି । ତେଣୁ ପଳାଇଯିବାକୁ ହେବ ।

ଲକ୍ଷ୍ୟସ୍ଥଳକୁ ବହୁ ପଛରେ ଛାଡ଼ିଆସିଥିବା,—

ସୁବଳ ପଟ୍ଟନାୟକ ଧାଇଁଚ ।



# କୌଣସି ଗୁଳିଖଟିରେ ଏକ ସନ୍ଧ୍ୟା

॥ ପ୍ରସ୍ତାବନା ॥

[ ବ୍ରିଟିଶମାନେ ଏ ଦେଶରୁ ଗଲା ପରଠୁଁ ଏପର୍ଯ୍ୟନ୍ତ କେତେ ଲୋକ ସ୍ୱାଧୀନ ହେଲେଣି, ମୁଁ ଜାଣେନା । ତେବେ ଲୋକଙ୍କ ଚନ୍ତାଧାରାକୁ ଯେ ଏଯାଏ ସ୍ୱାଧୀନତା ଛୁଇଁ ନାହିଁ—ଏକଥା ଜୋରଦେଇ କୁହା ଯାଇପାରେ । କାରଣ ବହୁ ଲୋକଙ୍କର ଏବେ ବି ଧାରଣା ରହିଚ, ଆମକୁ ଆଗେ ଗୋରା ସାହାବ ଶାସନ କରୁଥିଲେ, ଏଇକ୍ଷଣି କଳା ସାହାବ ଶାସନ କରୁଛନ୍ତି । ଶୋଷଣ ଓ ଶାସନର ଡୋର କେବଳ ହସ୍ତାନ୍ତର ହେଇଚ ମାତ୍ର । କିଛି ଗୋଟାଏ ହେଇଗଲେ, 'ସରକାର' ବୋଲି କେଉଁ ଗୋଟାଏ ଜୀବ ଅଛି—ସେ ବୁଝିବ ବୋଲି କୁହାଯାଉଚ ।

ଏହା ଦାସ ମନୋବୃତ୍ତିର ଫଳ ।

ଆମର ମନୋବୃତ୍ତି ଆଜିଯାଏ ସ୍ୱାଧୀନ ହେଇନ ।

କେବଳମାତ୍ର 'ମୁଁ'ଟି ସ୍ୱାଧୀନ ହେଇଚ ।

ଏକ ଭିତରେ ଅନେକ 'ମୁଁ' । ନା, ଅନେକ ଭିତରେ ଏକ 'ମୁଁ' । ଯଥା :— ମୁଁ ରତ୍ନାକର ଚଇନି । ଗୋଟାଏ 'ମୁଁ' ର ଖୋଳପା ହେଉଚ ମୋର ନାଁ । ଲମ୍ବା ଟାଣୁଆ ଖୋଳପା ଭିତରେ କେଉଁ କଅଁଳ ଛନଛନ 'ମୁଁ'ଟିଏ । ଅସଂଖ୍ୟ ଖୋଳପା ଭିତରୁ ଇଏ ଗୋଟିଏ । ଏ 'ମୁଁ'ଟି ଏକ ଚରିତ୍ର, ଯିଏ କି ଏସବୁ ଘଟଣା ଶୁଣିଚ, ଦେଖିଚ, ଲେଖିଚ ।

ଠିକ୍‌ରୂପେ 'ଲେଖିଚ' ବୋଲି କହି ହେବନି । କାରଣ ଏହା ଲେଖା ନୁହେଁ । କେତୋଟି ଶୁଣାକଥା ଓ ଆପଣମାନଙ୍କ ଭିତରେ ଥିବା ବ୍ୟବଧାନ ମଧ୍ୟରେ ଏହା ଏକ କ୍ଷୁଦ୍ର ଅବତରଣିକା ।

ମୁଁ ବି ଜାଣେନି, ଯେଉଁ କଥାମାନ ଉପସ୍ଥାପିତ କରାଯିବ, ତାର ସ୍ରଷ୍ଟା କିଏ ? ପୁଣି ଏ ସୃଷ୍ଟିର କି ଉଦ୍ଦେଶ୍ୟ, ତା'ବି ଜାଣେନା । ଏଥିରେ କାହାପ୍ରତି ଆକ୍ଷେପ ଥାଇପାରେ; ଅବା କାହାକୁ ସମାଲୋଚନା କରାଯାଇ ଥାଇପାରେ ।

ମାତ୍ର ଏହା ଉଦ୍ଦେଶ୍ୟପୂର୍ଣ୍ଣ ଆକ୍ଷେପ ନୁହେଁ ।

ମୋର କିନ୍ତୁ ଗୋଟିଏ ସଫେଇ···

ପ୍ରସ୍ତାବନାରେ ଏଇ ସାମାନ୍ୟକଥନ······

ଆଖି ନାହିଁ, କାନ ନାହିଁ, ବାଜିଗଲେ ଦୋଷ ନାହିଁ

ମାଫ୍ କରିବେ । କ'ଣ କହୁ କହୁ ଆଉ କ'ଣ ଗୁଡ଼ାଏ କହି ପକେଇଲିଣି । ହଁ, ପ୍ରଥମେ ପରିବେଶର ଅବତାରଣାପାଇଁ ମୁଁକୁ କା' ଦେଇ ଦେଉଚି । ସିଏ ଘଟଣାଗୁଡ଼ିକ ଗୁନ୍ଥି ଥୋଇବ । ]

## ।। ପରିବେଶ ।।

ସ୍କୁଲ୍ ସ୍କୁଲୁ ହଠାତ୍ ମନେ ଅଟକିବାକୁ ହେଲା । ଅସରାଏ ଭଲ ଛେଚୁ ବରଷା ଆରମ୍ଭ ହେଇ ଯାଇଥିଲା । କିଧୂମ ଖରା ପରେ ବର୍ଷା । ଖୁବ୍ ଆରାମ ଦେଉଥିଲା ପାଗଟା । ଆଜି ଅପରାହ୍ନର ଆକାଶ ପିଠିରେ ଅଗୃନକ କଳାହାଣ୍ଡିଆ ମେଘ ନାଚି ହେଇ ପଡ଼ୁଥିଲା । କିନ୍ତୁ ବରୁଷା ପୃଥିବୀ !!···

ଆହା !!!

ମନେ ହେଉଥିଲା, ବହୁ ବର୍ଷ ଯୌନଜୀବନ ସହିତ ସମ୍ପର୍କ ରଖି ନ ଥିବା ଏକ ବୟସ୍କା ନାରୀ ଆଜି ଆତ୍ମବିସ୍ମୃତ ହେଇ ପୁଣି ରତିତୃପ୍ତି ଲାଭ କରୁଚି; ଏବଂ ଆଖିବୁଜି ବଡ଼ ବଡ଼ ଟୋପା ବର୍ଷାର ଚୁମାକୁ ହଜମ କରୁଚି; କିନ୍ତୁ ମୁହଁରେ ଏକ ବିରୋଧୀ ପ୍ରତିବାଦ ସ୍ୱର···'ନା—ନା—ନା'— ; କିନ୍ତୁ ସେ ନାଁ'ଟା ହଁ-ହଁ ଭଳି ଶୁଭୁଚି ।

ପୃଥିବୀରେ ଏମିତି ମଧୁର ସ୍ୱର ଗୁଞ୍ଜରଣ ।

ଆଜି ବହୁ ଦିନ ପରେ ବର୍ଷା ହେଉଚି ।

ବର୍ଷାରେ ଭିଜିବା ଆଗରୁ ସେଇ ନୁଆଁଣିଆ ସ୍କୁଲଘର ବାରଣ୍ଡାକୁ ଉଠିଗଲି । ଆସନ୍ନ ସନ୍ଧ୍ୟାର ପରିବେଶ ଖୁବ୍ ମିଠା ମିଠା ଲାଗୁଥିଲା । ଖୋଲା ସ୍କୁଲଘର ଭିତରୁ ସ୍ପଷ୍ଟ ନ ହେଲେ ବି ଅସ୍ପଷ୍ଟ ଧୂଆଁର ଧାର ବର୍ଷାରେ ଚିନ୍ତିବୁଡ଼ି ବାହାରକୁ ବୁଲି ଯାଉଥିଲା ।

ଘର ଭିତରେ ନିଆଁ ର ଜିକ ଜିକ ରୂପ ।

ପରେ ପରେ ମନଖୋଲା ହସଗୁଳା ହସ ।

ଭିତରେ କେତେଜଣ ଲୋକ ବସିଥିଲେ । ଭଲଭାବେ ଜଣା ପଡ଼ୁ ନ ଥିଲା, କେତେ ଜଣ । ସେମାନେ କିନ୍ତୁ ହସୁଥିଲେ । ହୃଦୟଖୋଲା କଥା ହେଉଥିଲେ । ଆଗେ ଭୁନ୍‌ଭାନ୍ । ତା'ପରେ ଫୁନ୍ ଫାନ୍ । ତା'ପରେ ଭନ୍‌ଭାନ୍ ।

ଗୃହଘରେ ଚଳମର ଧୂଆଁ

ଲଗାମଛାଡ଼ କଥାର ସୁଅ ···

ସେଇ ପରିବେଶ ମୋ ଉପରେ ଯେମିତି ହସିବା, ବସିବା, କାଶିବା ଓ କହିବାପାଇଁ ନିଷେଧାଜ୍ଞା ଜାରି କରିଦେଇଥିଲା । ମୁଁ ଶୁଣୁଥିଲି ଜଣକ ପରେ ଜଣକର କଥା ···

## ।। ୧ମ ଚରିତ୍ର ।।

··· ବୁଝିଲ ପଣ୍ଡା, ଆଜି ଭଳି ସେଦିନ ବି ବେଲକୁଡ଼କୁ ଏମିତିଆ ବର୍ଷା ଲାଗିଥାଏ । ଆସରଟାରେ ଖୁବ୍ ଗମାତ୍ ହେଉଥାଏ । ଆଲୋଚନା ଜମିଥାଏ ଖୁଉବ୍ । ସେଦିନ ପ୍ରସଙ୍ଗ ପଡ଼ିଥାଏ, ଚନ୍ଦ୍ରରେ ମଣିଷ ଅଛନ୍ତି କି ନାହିଁ !'

ଯୁକ୍ତି···ଯୁ କ୍ତି ଉପରେ ଯୁ କ୍ତି······

ତା' ଉପରେ ଯୁ କ୍ତି···

ହଁ—ନାହିଁ···,ସ୍ମାଆର ଲୁଚକାଳି ଖେଳ ।

ମୁଁ ଚକାମାଡ଼ିଲି ପକାଇ ବସିଥାଏ । ଗୁରୁଦେବ ଶିବଙ୍କ ପ୍ରସାଦରୁ କିଛି ସାତ୍ତ୍ୱିକ ଆହାର ହେଇ ସାରିଥାଏ ଦ'ଘଣ୍ଟା ପୂର୍ବରୁ । ସବୁ ଶୁଣୁଥାଏ । କିନ୍ତୁ କିଛି କହୁ ନ ଥାଏ । କଥାଟା ଉନାଘନା ଉପରକୁ ଉଠିଲା ବେଳେ ମୁଁ ଠିଆ ହୋଇ ପଡ଼ିଲି;—ଠିକ୍ ଯେମିତି ଭାବବିଭୋର ଚଇତନିଆ ଭକ୍ତ ।

ସମସ୍ତେ ଜାଣିଲେ, ମୋର କିଛି କହିବାର ଅଛି । ସେ ତ ଏମିତି ଯା' ଇଚ୍ଛା ତା' ଆଲୋଚନା ନୁହେଁ । ଏକବାରେ ଗୁରୁତ୍ୱପୂର୍ଣ୍ଣ ଆଲୋଚନା । ମୁଁ ଠିଆ ହେଇଗଲା ମାତ୍ରେ ସଭେଁ ଚୁପ୍‌ଚାପ ହେଇଗଲେ । ଧୀର ଗମ୍ଭୀର କଣ୍ଠରେ ମୁଁ କହିଲି, ଚନ୍ଦ୍ରରେ ନିଶ୍ଚିତଭାବରେ ମଣିଷ ନାହାନ୍ତି ।

ସମୂହ ପ୍ରଶ୍ନର ବର୍ଷା ଆରମ୍ଭ ହେଇଗଲା ।

'କିପରି' ··· ?

ପ୍ରମାଣ କ'ଣ ? ?

ତୁମେ ପ୍ରମାଣ ଦେଇପାରିବ ?

ମୁଁ ଉତ୍ତର ଦେଲି, ଚନ୍ଦ୍ରର ଲୋକଙ୍କଠାରୁ ଭାରତ କୌଣସି ଆର୍ଥିକ ସାହାଯ୍ୟ ପାଇ ନାହିଁ; କିମ୍ବା ସେ ଦେଶରୁ ସେ କିଛି ଧାର ଆଣି ନାହିଁ । ମଣିଷ ବସବାସ କରୁଥିବା ପ୍ରତ୍ୟେକ ଦେଶରୁ ଭାରତ କିଛି ନା କିଛି ଧାରିଛି । ଅତଏବ ଚନ୍ଦ୍ରରେ ମଣିଷ ନାହାନ୍ତି ।

କାହାରି ମୁହଁରେ ଆଉ କଥା ନାହିଁ ।

ସମସ୍ତେ ନୀରବ; ଚୁପ୍‌ଚାପ୍

ବାପ୍ ! !



ବାହାରେ ବର୍ଷା ରୋମାଞ୍ଚ ସୃଷ୍ଟି କରୁଥିଲା ।

ସ୍ମୃତିର କଦମ୍ବ ଫୁଲ ଫୁଟାଉଥିଲା ।

ଘରଭିତରେ ଜକ ଜକ ନିଆଁର ଅବତାର ।

ନିଆଁ କାହାଣୀ କହୁଥିଲା

॥ ୬ଷ୍ଠ ଚରିତ୍ର ॥

'...ରାଜେନ୍ଦ୍ର ଆଜ୍ଞା, ତୁମକୁ ଓଳଗି । ଚଳମ ରାଣ; ଆଉଁରେ ତମେ ସିନା ସିଇଠି ଜିତାପଟଟେ ନେଇଗଲ, ହେଲେ ଇଠି ନୁହେଁ । ତମେ ନେତାଗିରି ଦେଖେଇ ତାଙ୍କୁ ଚୁପ୍ କରଦେଲ । ମୁଁ କଇବ, ଏସବୁ ଘଟିଚ ତମରମାନଙ୍କ ସକାଶେ । ଜୀବନରେ ଯୋଉଗୁଡ଼ାକ କିଛି ହେଇ ନ ପାରଲେ, ସେଇଗୁଡ଼ାକ ହେଲେ ନେତା ।

ରାଜୁ ଆଜ୍ଞା; ଖେସା ବୁଝିବନ । ଏ ନେତାଗୁଡ଼ାଙ୍କର ଗହଳ କେବେଠୁଁ ହେଲା ଜାଣିଚ ? ... ଥରେ ଭଗବାନ ପାଇଟି ସାର ଗୋଟାଏ ଫାଇଲରେ 'ସୌଭାଗ୍ୟ'କୁ ବାନ୍ଧି ତାଙ୍କ କରଣୀ ବାପୁଡ଼ାକୁ ହେପାଜତରେ ରଖିବାକୁ ଦେଲେ । ସିଏ ଭଗବାନଙ୍କ କରଣୀ ହେଲେ କ'ଣ ହେବ, ଆମ ଦେଶର କରଣୀଙ୍କ ଭଳି ସବୁ ହେଙ୍କଡ଼ବାଜି ଗୁଣ ତା' ଠି ଥିଲା । ଭାରି ଖୁମାଣିଆଟେ ସେ । ଫାଇଲଟାକୁ ଫିଟାଫିଟିକରି ବେହୁସିଆରରେ ପକେଇ ଦେଇଥିଲା ।

କାମରେ ତ ଆଗ୍ରହ ନାହିଁ—

ହନେ କ'ଣ ହେଲା, କି ଫାଇଲଟାରୁ ଅଧିକାଂଶ 'ସୌଭାଗ୍ୟ' ପବନରେ ଉଡ଼ିଯାଇ ତଳେ ପଡ଼ିଗଲା । ତଳ ବୋଇଲେ ଆଉ କୋଉଠେ କି ? ସେଗୁଡ଼ା ଉଡ଼ି ଉଡ଼ି ଆସି ସିଧା ପୃଥିବୀର ଆମର ଏଇ ଦେଶରେ ପଡ଼ିଲା ।

ଇଆଡ଼େ କ'ଣ ହେଉଛି ନା, ଆମ ଦେଶରେ ଗୋଟାଏ ମୂର୍ଖ ଧୁଙ୍ଗା ପିଲାଟାଏ ଗୁଡ଼ାଏ ଗଧ ଚରଉଥିଲା । ସୌଭାଗ୍ୟଗୁଡ଼ାକ ଆସି ସେଇ ଗଧଗୁଡ଼ାକ ଉପରେ ବର୍ଷିହୋଇ ପଡ଼ିଲା । ଗଧଗୁଡ଼ାକ ସାଙ୍ଗେ ସାଙ୍ଗେ ନେତା ପାଲଟିଗଲେ । ଆଉ ସେ ପିଲାଟି ତାଙ୍କ ଉପର ନେତା……

*

କେତେ ଜଣ ହସିଲେ କେଜାଣି ?

ହସଗୁଡ଼ାକ କିନ୍ତୁ ବିକଟାଳିଆ ଶୁଭିଲା ।

ବର୍ଷା ଛାଡ଼ି ନ ଥିଲା ।

ପୃଥିବୀ ଆନନ୍ଦରେ ଝୁମୁଥିଲା ।

## ।। ତୃତୀୟ ତରଙ୍ଗ ।।

ହଇହେ ପଣ୍ଡା ଭାଇନା ! ରାଜୁବାବୁଙ୍କୁ ସିନା ମୁହଁ ଫୁଟାଣିଟେ ଦେଖେଇଦେଲୁ—ବ୍ରଜମୋହନ ଏଠି ବସିଚ ଯେ ' ଅନ୍ୟକୁ କହିବା ଖୁବ୍ ସହଜ; ନିଜକୁ ଚଉଲୁନା କାହିଁକି ? ବୁଝିଲ, ଆମେ ସମସ୍ତେ ଏକା ନାଉର ମଞ୍ଜି । ଭଗବାନଙ୍କଠାରୁ ଅଭିଶାପ ଭିକ୍ଷାକରି ଆମେ ଜନ୍ମିଚେ ।

ଜାଣିଚ ପୁରାଣର ସେ ଗହନ-ତତ୍ତ୍ୱକୁ ?

ପଣ୍ଡା ଓ ରାଜେନ୍ଦ୍ର ଦୁହେଁ ବୋଧେ ଏକଥା ଶୁଣୁ ଶୁଣୁ ଥତମତ ହେଇଗଲେ । କାରଣ ନିହାତି ବସ୍ତୁବାଦୀ ଲୋକଟା ଆଜି ପୁରାଣ-ତତ୍ତ୍ୱ ଶୁଣାଇବ ବୋଲି କହୁଚ । ବୋଧେ ହନେ କାଳେ ଏମିତି କହେନ । ଦୁଇଟା ଦଦରା ସ୍ୱର, ମିଳିତଭାବରେ ଶୁଭିଲା, ଆଁ !!

ଏଏଁ ଏ !! କିଛି ଜାଣିନ, ଖାଲି ମୁହଁ ଭଡ଼ିକ !

ଶୁଣ । ଗୁରୁଘର ବିଦ୍ୟା ଏ !

ବ୍ରହ୍ମା ମହାପ୍ରଭୁଙ୍କର କ'ଣ ଗୋଟାଏ ଅସୁବିଧା ପଡ଼ିବାରୁ ସେ ନିଜ କାମରୁ କିଛି ଦିନ ଛୁଟି ନବାକୁ ଚାହିଁଲେ । କିନ୍ତୁ କଥା ଉଠିଲା, ତାଙ୍କ ଦାୟିତ୍ୱ ସମ୍ଭାଳିବ କିଏ ? ସବୁ ଦେବତାଏ ମନାକଲେ । ବ୍ରହ୍ମା ବଡ଼ ହତାଶ ହେଇପଡ଼ି ଶେଷରେ ଭୋଳା ମହାପ୍ରଭୁ—ଆମ ଗୁରୁଦେବ ଶିବ ମ, ତାଙ୍କର ପାଖରେ ଯାଇ ପହଞ୍ଚିଲେ । ବହୁତ କୁହାପୋଛା କରିବାରୁ ଶିବ ରାଜି ହେଇଗଲେ ।

ଶିବ କହିଲେ, ତମ ଅସୁବିଧା ଦେଖି ମୁଁ ରାଜି ହଉଚି । ନୋହିଲେ ଏତେ ଝାମେଲାରେ ପଶିବା ଲୋକ ମୁଁ ନୁହେଁ । ମୋ ଗଞ୍ଜେଇ ଭଲ ତ, ମୁଁ ଭଲ । ତମେ ନନ୍ଦୀ ଭୃଙ୍ଗୀଙ୍କି ସବୁ କାମ ବୁଝେଇ ଦେଇଯାଅ । ମୁଁ କେବଳ କାଗଜ-ପତ୍ରରେ ଦସ୍ତଖତ ମାରିବା ଲୋକ । ଭିତର କଥା ବୁଝିବାକୁ ମୋର ଏବେ ବେଳ କାହିଁ ?

ବ୍ରହ୍ମା ଟିକିଏ ଆଶ୍ୱସ୍ତ ହେଲେ ।

ଯାହା ହଉ, କାମଟା ସରିଯିବ ।

ସେ ସେଇଆ କଲେ । 'ଆତ୍ମା' ଜମାଥିବା ଘରର ଚାବିକାଠିଟିକୁ ମଧ୍ୟ ନନ୍ଦୀ ଭୃଙ୍ଗୀଙ୍କି ଦେଇଦେଲେ । କହିଲେ, ଏ ଜିନିଷ ପ୍ରତି ଟିକିଏ ହୁସିଆର ଥିବ । ଏଗୁଡ଼ାକ ଦୁର୍ମିଳ ବସ୍ତୁ ।

ବ୍ରହ୍ମା ବିଦା ହୋଇଯିବା ବାଦ ନନ୍ଦୀ ଭୃଙ୍ଗୀଙ୍କର ଇଚ୍ଛା ହେଲା— ଆତ୍ମାଗୁଡ଼ା କେତେ ଅଛି ଓ କେମିତିଆ, ଥରେ ଦେଖିବା । ଦିହେଁ ଯାଇଁ ଆତ୍ମାଥିବା ଘରର କବାଟଟାକୁ ଠିଆଁ ମେଲା କରିଦେଲେ । ଫଳରେ ଆତ୍ମାଗୁଡ଼ାକ କିଲିକିଲିଆ ହୋଇ ସବୁ କଏ କୁଆଡ଼େ ଘୂରି ବୁଲିଲେ । ଏ ଦିହେଁ ଯେତେ ଡକାଡକି କଲେ, ସେମାନେ ଆଉ ଫେରିବାକୁ ରାଜି ହେଲେ ନା । ବାଧହୋଇ ଏମାନେ ଶିବଙ୍କ ଆଗରେ ସତ କଥା ଯାଇ ପ୍ରକାଶ କରିଦେଲେ ।

ଯିଏ ଥରେ ସ୍ୱାଧୀନତା ଚାଖିଚି, ସିଏ ପୁଣି ବନ୍ଦୀହୋଇ ରହିବାକୁ କୁଆଡ଼ୁ ଚାହିଁବ ?

ଶିବ ଦେଖିଲେ ବଡ଼ ଅଡୁଆ ପରିସ୍ଥିତି ଉପୁଜିଲା । କଣ କରିବେ ? ସେ ମଧ୍ୟ ଆସି ଆତ୍ମାମାନଙ୍କୁ ଖୁବ୍ କହଁ ଲେଇ ଡାକିଲେ । କହିଲେ, 'ଦେଖ, ମୁଁ ନଜେ ଶ୍ମଶାନବାସୀ । ମୋର ଦିନେ ଚୂଲି ଜଳିଲେ ଦିନେ ଜଳେନି । ଦେହରେ ମୋର କିଛି ନାହିଁ । ତେଣିକି ତମକୁସବୁ କେଉଁଠି ସ୍ଥାନ ଦେବି ? ତମେ ବାରହିନସ୍ତା ହେବ । ମୋ କଥାମାନ; ଯାଅ ସେ ଘରେ ଚୁପ୍‌ଚାପ ରୁହ ।

ଆତ୍ମାମାନେ ତ ମୁକ୍ତ ରହିବାର ସ୍ୱାଦ ଚାଖି ସାରିଥିଲେ । ବନ୍ଦ ଘରେ ରହିବାକୁ ଆଉ ରାଜି ହୁଅନ୍ତେ କେତେବେଳେ ! ସମସ୍ତେ ଏକ ସ୍ୱରରେ କହିଲେ, ଯେତେ ଯନ୍ତ୍ରଣା ମିଳୁ ପଛେ, ଆମକୁ କୋଉ ରାଜ୍ୟରେ ଟିକିଏ ମୁଣ୍ଡଗୁଞ୍ଜିବାକୁ ସ୍ଥାନ ଦିଅନ୍ତୁ । ଆମଠୁ ସମସ୍ତ ମାନବିକ ସୁଖସମ୍ଭୋଗ କାଢ଼ି ନିଅନ୍ତୁ ପଛେ, ଦୁର୍ଲ୍ଲଭ ମାନବ ଜନ୍ମ ଦିଅନ୍ତୁ । ଆମେ ଟିକେ ବୁଲିବୁଲି କରିବୁ ।

ଶିବ ତ ଅଳ୍ପକେ ସନ୍ତୁଷ୍ଟ ହେବା ଦେବତା । ସେ ତାଙ୍କ କଥାରେ ରାଜି ହୋଇଗଲେ । କହିଲେ, 'ହଉ—ତମେମାନେ ଧାଡ଼ିବାନ୍ଧି ଜମ୍ବୁଦ୍ୱୀପ ଭୂଖଣ୍ଡକୁ ଯାଅ । ସେଠାରେ ନାନାଦି ଯନ୍ତ୍ରଣା ପାଅ । ତମକୁ ମୋଭଳି ଦେହକୁ କନା ଓ ପେଟକୁ ଦାନା ନ ମିଳୁ । ସମସ୍ତ ମାନବିକ ସୁଖ ପ୍ରାପ୍ୟ ନ ହେଉ । କଷ୍ଟରେ ବଞ୍ଚି ରହିବା ଶିଖ ।'

ବୁଝିଲ ନା ଭାଇନା ! ସେଇ ଦିନୁ ଧାଡ଼ି ବାନ୍ଧି ଆମେ ଏ ଦେଶରେ ଆସି ଭିଡ଼ ଜମାଉଛୁ । ଜନସଂଖ୍ୟା ବଢ଼ିବାର ଏଇ ହେଲା ମରମ କଥା । ଏଗୁଡ଼ାକ ଏମିତି ବଢ଼ି ଚାଲିଥିବ—



## ।। ଏବଂ ଶେଷରେ ।।

ହଠାତ୍ ବର୍ଷା କେତେବେଳେ ବନ୍ଦ ହୋଇଯାଇଛି ମୁଁ ଜାଣେନା; ସନ୍ଧ୍ୟାର ସେଇ ଧୂଆଁଳିଆ ପରିବେଶ ଭିତରୁ ମୁଁ ମୁକୁଳି ଆସିଲି । ଫେରିବାବେଳେ ଭାବୁଥିଲି, ବୋଧହୁଏ ମୁଁ କୌଣସି ଅବାଂଛିତ ଜାଗାରେ ଆଶ୍ରୟ ନେଇ ନ ଥିଲି ।

ଏଭଳି ଜାଗାରେ କିଛି ସମୟ କଟିବା ଉଚିତ ।

କାରଣ—

ଏଇଠି ରହିଛି ଏ ଦେଶର ଓଟକା ଅର୍ଥନୀତି ଓ ରାଜନୀତି ।

ଏଇଠି ହେଉଛି ଏ ଦେଶର ସାମାଜିକ ପରିସ୍ଥିତି ବିଷୟରେ ଏକ କଟୁଭିକ୍ତ ଆଲୋଚନା ।

କିନ୍ତୁ ଭିନ୍ନ ଭାଷାରେ ।



# ମାହ୍ୟାଇ

ମାହ୍ୟାଇ ଲୋକ ହିସାବରେ ଭଲ ।

କିନ୍ତୁ ତା'ମାନେ ନୁହେଁ ଯେ, ତାଙ୍କ ହାତ ସୁନ୍ଦର, ତାଙ୍କ ଗୋଡ଼ ସୁନ୍ଦର; ପୁଣି ତାଙ୍କ ଚାଲିଚଳନ ହାବଭାବ ସୁନ୍ଦର । ତାଙ୍କପାଇଁ ଏ ସୁନ୍ଦର ବିଶେଷଣଟା ନିହାତି ଜରୁରୀ ନୁହେଁ ।

ଏଇଟା କିନ୍ତୁ ସବୁରି ମୁହଁର ଗୋଟିଏ ସ୍ୱୀକାରୋକ୍ତି ଯେ—ମାହ୍ୟାଇ ଲୋକ ହିସାବରେ ଭଲ । ଆପଣ ଯଦି ଥରେ ଖଣ୍ଡେ ତାଙ୍କ ସଂସ୍ପର୍ଶରେ ଆସିଯିବେ, ତେବେ ଆପଣବି ଏକଥାକୁ ନିଜ ମୁହଁରେ ଦୋହରେଇବେ ।

ଅଫିସ୍‌ର ପିଅନ୍‌ଠାରୁ ବଡ଼ବଡ଼ୁଆ ଯାଏ—

ସମସ୍ତଙ୍କର ପ୍ରିୟଜନ ଏଇ ବ୍ୟକ୍ତିଟି ।

ଏବେ ସେ ଆଉ ଗୋଟାଏ ବ୍ୟକ୍ତି ନୁହେଁ; ଅର୍ଥାତ୍ ତାଙ୍କୁ ବ୍ୟକ୍ତି କହିବା ଅନୁଚିତ । ସେ ତ ଗୋଟାଏ ଅନୁଷ୍ଠାନ । ଅନେକଙ୍କର ଏକାନ୍ତ ଆବଶ୍ୟକ ତଥା ସ୍ମରଣୀୟ ପ୍ରାଣବନ୍ଧୁ । ଜନସେବା ନିଗମକୁ ଯାଇ, ଏଭଳି କୌଣସି ବ୍ୟକ୍ତି ନାହିଁ, ଯିଏ ତାଙ୍କୁ ନ ଖୋଜିଛି ବା ନ ଖୋଜିବ—

ସେଇ ମାହ୍ୟାଇ—

ମାମ୍ମାଧର···

ମାହାଣ୍ଡି···

ବାସ୍, ଏଇ ତିନୋଟି ରୂପ ତାଙ୍କର । ତେବେ ସେ ବେଶୀ ପରିମାଣରେ ମାହ୍ୟାଇ ରୂପେ ପରିଚିତ । 'ମାମ୍ମାଧର' ବା 'ମାହାଣ୍ଡି' କହିଲେ କେହି ହୁଏତ ତାଙ୍କର ଯଥାର୍ଥ ଠିକଣା କହି ନପାରେ; ମାତ୍ର 'ମାହ୍ୟାଇ' କହିଲେ ସମସ୍ତେ ଜାଣିବେ । 'ମାମ୍ମାଧର ଭାଇ' ଶବ୍ଦ ଦିଇଟା ଜନମୁଖରେ ବହୁବାର ଧର୍ଷିତା ହୋଇ ପରିଶେଷରେ ଗୋଟାଏ ନିହାତି ଆମଣାର ଶବ୍ଦରେ ପରିଣତ ହୋଇଯାଇଛି ।

ଅଫିସରେ ଥିବା ନହାଉ ଗୁଡ଼ାଳଆ ଲୋକ କେଇଟା ତାଙ୍କୁ କେବଳ ଡାକନ୍ତି 'ମାସ୍ଟାଧର୍' । କିନ୍ତୁ ତାଙ୍କ ସଂଖ୍ୟା ଗ୍ୱର ପାଞ୍ଚ ଭିତରେ । ସେମାନେ ମାସ୍ଟାଧର୍ ବୋଲି କହିଲେ ବି ଲୋକେ ତାକୁ ଅନୁବାଦକରି ବୁଝନ୍ତି 'ମାହ୍ୟାଇ' । ସତେ ଯେମିତି, ଏଇ କେଇଟା ଶବ୍ଦର ଗୋଟିଏ ହିଁ ଅର୍ଥ । ସମସ୍ତେ ତାହା ବୁଝିବାକୁ ବାଧ୍ୟ ।

ଏବଂ ନଗମର ସଭ୍ୟ କେଇଜଣ—

ଯୋଉମାନେ ଗାଡ଼ିରେ ଇଠିକି ଆସନ୍ତି, ଗମ୍ଭୀରହୋଇ ଏଠି ଯା-ଆସ କରନ୍ତି; ମାପିଚୁପି କଥାଭାଷା କରନ୍ତି; ବେଶି କହିଲେ ଗୁମର ପଦାକୁ ଫିଟିଯିବ ବୋଲି ଅଧିକ ଗୁଡ଼େ ଭଡ଼ଭଡ଼ ହୁଅନ୍ତିନି । ସମସ୍ତିଙ୍କ ଆଖିରେ ଚଷମା । ଆଉ ଦାଇଟା ଆଖି ନହେଲେ ପ୍ରାର୍ଥୀମାନଙ୍କର ଭିତର ରୂପଟା ଚହ୍ନି ହବ ନାହିଁ । ଚମ ଆଖିରେ ସେମାନେ ସାର୍ଟିଫିକେଟ୍ ଓ ବାହାର ଛଇଛଟକ ଆଦି ଦେଖନ୍ତି; ମାତ୍ର ଚଷମା ଆଖିରେ ଦେଖନ୍ତି ଭିତରର ଅସଲ ରୂପ । ସେଇମାନେ—

ସେମାନେ ସମସ୍ତେ ଡାକନ୍ତି 'ମାହାର୍ଣ୍ଣି' ।

ସତେକି ଭଜା ସଜନାଛୁଇଁ ଗ୍ରେବେଇ ଫିଙ୍ଗିଦେବା ପୂର୍ବ ମୁହୂର୍ତ୍ତିରେ ପାଟିରୁ ଖସିଥିବା ଶବ୍ଦଟେ ଇଏ···

ତାଙ୍କ କଥା ସେଘରୁ ପଦାକୁ ଆସେନି । ତେଣୁ ସାହାବୀ ଆଭିଜାତ୍ୟ ଭରା ଶବ୍ଦଟି ଘିରଘିର ଘୂରୁଥିବା ପଙ୍ଖା, କଲିଂବେଲ୍ ଓ ଫିସ୍ ଫିସ୍ ହେଉଥିବା ଓଠର ପରିଧି ଟପି ବେଶୀ ଦୂରକୁ ଯାଇପାରେନି ।

ଏଇ ଅଫିସ୍ର କେବଳ ନୁହେଁ, ସମସ୍ତଙ୍କର—

ସମସ୍ତ ଗୋପନୀୟତାର ବନ୍ଦୁଟି ଏଇ ମାହ୍ୟାଇ ।

ନଗମର ସଭ୍ୟମାନଙ୍କର ଏକାନ୍ତ ବିଶ୍ୱସ୍ତ, ବୟସ୍କ କର୍ମଗ୍ୱରୀମାନଙ୍କ ପାଇଁ ଆନୁଗତ୍ୟ ଓ କର୍ମନିଷ୍ଠାର ଚଳମାନରୂପ ଏବଂ ଅନେକ କର୍ମ-ଆଶାୟୀ ପ୍ରାର୍ଥୀଙ୍କର ଆଶା ଓ ଆଶ୍ୱାସନାର ମହାଦୀପ ଏଇ ମାହ୍ୟାଇ । ଅଦ୍ଭୁତକର୍ମୀ ବ୍ୟକ୍ତି ଜଣେ ସେ । କ୍ଳାନ୍ତି ବା ଅସନ୍ତୋଷ ତାଙ୍କ ଦେହ-ମନର ସୀମା ସ୍ପର୍ଶ କଲା ଭଳି କେବେ ମନେହୁଏ ନାହିଁ ।

ଏକ କର୍ମବହୁଳ ଚଳମାନ ଛବି ।

ଧୀର, ଗମ୍ଭୀର ହସକୁଳା ମୁହଁ । ଫୁଲପେଣ୍ଟ୍, ହାଓ୍ୱାଇ ଓ ଚପଲର ମଣିଷଟିଏ । ପାନ, ବିଡ଼ି, ସିଗାରେଟ୍ ଆଦି କାହାର ହେଲେ ସେ ଦାସ ନୁହଁ ।

ଘର କର୍ତ୍ତବ୍ୟାନସ୍ତ । ସକାଳ ନଅଟାରୁ ରାତି ନଅଟା ପର୍ଯ୍ୟନ୍ତ ସେ ଅଫିସରେ ଥାଏ । ଏତେ ବଡ଼ ଅଫିସ ଭିତରେ ତାଙ୍କ ଭଳି ମିଷ୍ଟଭାଷୀ, ଏକାନ୍ତ ଆତ୍ମୀୟ ମଣିଷଟେ ଆଉ ନାହାନ୍ତି । ଅନ୍ୟାନ୍ୟ ଥିବେ କିନା ସନ୍ଦେହ କରିବାର ଯଥେଷ୍ଟ କାରଣ ଅଛି । କାହିଁକିନା, ଆଉ କେଉଁଠି ଏତେ ଆପଣାର ମଣିଷଟିଏ ଅଫିସ କାମ କରୁଥିବା ଦେଖିବାକୁ ମିଳେ ନାହିଁ ।

ମୋଟ ଉପରେ ଏ ଅଫିସରେ ଯେତେ କର୍ମଚାରୀ ଅଛନ୍ତି, ମାହ୍ୟାଇଙ୍କ କର୍ମ-ପଟୁତା ପ୍ରମାଣ କରିବାପାଇଁ ସେମାନେ ସମସ୍ତେ ଅଳଂକରଣ । ଏମାନେ ନଥିଲେ ମାହ୍ୟାଇ ଏତେ ଶୋଭାବନ୍ତ ଦିଶନ୍ତେ ନାହିଁ । ଅନ୍ୟର ଦୋଷ ଥିବାରୁ ଯିନା ସ୍ୱାଙ୍କର ଗୁଣଗୁଡ଼ା ପଦାକୁ ଉପୁଡି ପଡୁଚି । ସତକଥା; ଦେଖିଲେ ତାହାହିଁ ଜଣାଯିବ ।

ଜନସେବା ନିଗମର ଭାବକେନ୍ଦ୍ର ମାହ୍ୟାଇ !

ଚେୟାରମେନ...

ନିଯ୍ୟାମକ ସଭ୍ୟ...

ଏବଂ ସଚୀବ...

ଆସିଲମାନେ କଲଂବେଲ୍ ରଡ଼ିଗୁଡ଼େ—'ମାହାଣ୍ଟି'...

ତକରା ଆସିଲମାନେ ବଡ଼ ଅବାଧଭାବରେ ବାଧତା ପ୍ରକାଶକରି ମାହ୍ୟାଇ ଯାଏ । କାମଗୁଡ଼ ଲୁଆଡ଼େ ଯିବାକୁ ସେ ପସନ୍ଦ କରେ ନାହିଁ । ମାତ୍ର ନଗଲେ, ନ ବୁଝେଇଲେ ଏ ବଡ଼ବଡ଼ଆମାନେ କିଛି ବୁଝିବେ ନାହିଁ । ଏତେ ଲେଖାଁ ପାଠ ପଢ଼ିଛନ୍ତି ଯିନା; ଭିତରେ ପଶି ପଙ୍କ ଚକଟି, ସାର କିନିଷଟାକୁ ଧରି ଉପରକୁ ଆସିବା ବିଦ୍ୟା, ସେମାନ୍ତ ଜଣା ନାହିଁ ।

କଥାଟା ନିଶ୍ଚୟ ଏଇୟା ।

ମାହ୍ୟାଇକୁ ଏକଥା କହିବାକୁ ପଡ଼େ ନାହିଁ । ମାତ୍ର ପାଖ-ଆଖରେ ବସିଥିବା କମ୍ବା ଅପେକ୍ଷା କରିଥିବା ପ୍ରତ୍ୟେକ ଚରିତ୍ରକୁ ଏହା ବୁଝିନେବାକୁ କଷ୍ଟ ହୁଏ ନାହିଁ ଯେ, ମୋଟାମୋଟି ଭାବେ କଥାଟା ସେଇଆ ।

ଭାବମୟ ମୂର୍ତ୍ତି ମାହ୍ୟାଇ ।

କର୍ମ ହିଁ ତାଙ୍କ ପ୍ରାଣ ।

କର୍ମବ୍ୟସ୍ତତାପାଇଁ ସେ ଘରୁ ଆସିଲ୍‌ବେଳେ କିଛି ଜଳଖିଆ ଗୋଟାଏ ପ୍ଲାଷ୍ଟିକ୍ ଡବାରେ ଆଣିଥାଏ; ମାତ୍ର କେତେବେଳେ ସେ ଜଳଖିଆ ଖିଆହୁଏ, ତାର ଟେର୍ ଏ ଯାବତ୍ କେହି ପାଇନାହାନ୍ତି । ତେବେ ଖିଆ ନ ହୁଏ, ଏମିତ

ହେଇତ କଥା ନାହିଁ । କାରଣ ସେ ବାହାରକୁ ଜଳଖିଆ ଖାଇବାକୁ ଯିବାନମିତ୍ତ ଏକ ନାପସନ୍ଦ ଭାବ ପ୍ରକାଶ କରେ ।

ଜଳଖିଆପାଇଁ କାହାର ସାଙ୍ଗରେ ଯାଏ ନାହିଁ ;

କିମ୍ବା କାହାରକୁ ସାଙ୍ଗରେ ନିଏ ନାହିଁ ।

ମାହ୍ୟାଇ କାମିକା ମଣିଷ । ସବୁବେଳେ କାମରେ ଲାଗିଥାଏ । ସକାଳୁ କେହି ନ ଉଠିବା ପୂର୍ବରୁ ଉଠି, ଗାଧୋଇ ପଢ଼ି, କଲୋନୀ ପାଖ ନୂଆ ପ୍ରତିଷ୍ଠା ହେଇଥିବା ଶିବ ମନ୍ଦିରକୁ ଚାଲିଯାଏ । ମାହ୍ୟାଇର ଝୁଲନ୍ତ ଘଣ୍ଟି ପିଟିବା ଶବ୍ଦରେ ଶିବଙ୍କ ନିଦ ଭାଙ୍ଗେ କି ନା କହି ହେବନି; କିନ୍ତୁ ଶୋଇଥିବା କଲୋନୀ ବାସିନ୍ଦାଙ୍କ ପକ୍ଷରେ ଭାଙ୍ଗେ ନିଶ୍ଚେ । ତା'ପରେ ସେ କାମରେ ଲାଗିଥାଏ ଯେ—ଲାଗିଇ ଥାଏ ଯେମିତି ।

ଅଫିସରେ ତ ତର ନଥାଏ ।

ସକଳ ଗୁପ୍ତ ତଥ୍ୟ ଓ ସତ୍ୟର ଚିତ୍ରଗୁପ୍ତ ସେ ।

ପ୍ରାର୍ଥୀମାନେ ପ୍ରଥମେ ତାଙ୍କୁ ଭେଟିଲେ, ଗୋଟିଏ ଫୁଲ ପରି ହସ ହସ, ନିହାତି ଆତ୍ମୀୟ ଲୋକଟି ସହିତ ଭେଟିଲା ଭଳି ମନେ କରନ୍ତି । କଥାରେ ଏପଟ ସେପଟ ନାହିଁ । ଖୁବ୍ କମ୍ କଥା ବି କହନ୍ତି । ଅବଶ୍ୟ କାମିକା ଲୋକ ବେଶୀ ନଁ ଗପିବା କଥାଟା ସଚରାଚର ଜଣା । ତଥାପି ତାଙ୍କୁ ଗପିବାକୁ ପଡ଼େ ଆବଶ୍ୟକ ସ୍ଥଳେ ।



ସେ ଗପନ୍ତି ବେଳେ ବେଳେ—

—ମାହ୍ୟାଇ ! ରିଟିନ୍ ଫଳ କେବେ ବାହାରିବ ? ଅବଶ୍ୟ ଏତେ ବ୍ରାଇଟ୍ କ୍ୟାରିଅର୍ ଥାଉଁ ଥାଉଁ ରିଟିନ୍‌ର ଗୋଟାଏ ପେପର୍ ଧୋକା ଦେଇଦେଲା । ଖାତା କିଏ ଦେଖୁଚି କେଜାଣି ? ଏ ଯୋଉ କମ୍ କମିଟିସନ୍, ଏଥିରେ ଯଦି ଚପି ଦେଇଥାଏନା, ଗଲା—ଏକ୍‌ବାରେ ମଡ଼ର୍ ! କ'ଣ କରିବା କହିଲେ ?

ଦରଦରେ ମାହ୍ୟାଇର ମୁହଁ ଗମ୍ଭୀର ହେଇଯାଏ ଆଦ୍ୟ ଆଷାଢ଼ର ମେଘ ଭଳି । ପ୍ରାର୍ଥୀ ପ୍ରତି ସହାନୁଭୂତି ଓ ସମବେଦନା ବର୍ଷାକରି ଅତି ଧୀର, ନମ୍ରଭାବରେ ସେ କହେ, ଏ ଯୁଗଟାତ ହେଡ଼ାଖିଆଙ୍କ ଯୁଗ, ତମେ ଜାଣ । ଅଧିକ ତମକୁ କ'ଣ ବୁଝେଇବି । ଏଥିରର ପରୀକ୍ଷକଗୁଡ଼ାକ ଭାରି ଚପା । ଏକଥା ବାହାରେ କହିବାର ନୁହେଁ । ତମେ ତ ମୋ ସାନଭାଇ ଭଳି; ମତେ ମାହ୍ୟାଇ ବୋଲି ଡାକୁଚ ! ଧର୍ମ କିନିଷଟା ମଣିଷ ମନରୁ ଏକ୍‌ବାରେ ଉଭେଇଗଲା । ତମକୁ ଏବେ କ'ଣ କହିବି ! ଏଣୁ ମାଇଲେ ଗୋହତ୍ୟା, ତେଣୁ ମାଇଲେ ବ୍ରହ୍ମହତ୍ୟା । ତମ ଅବସ୍ଥାତ ଜାଣେ—

—ସତେରେ ମାହ୍ୟାଇ, ଆପଣଙ୍କୁ ନେଇ ମୋର ସାହସ । ନଚେତ୍ ମୁଁ ଅବା କୋଉ ବଳରେ ଏ ଅଫିସ ଭିତରକୁ ପଶନ୍ତି । ଭଉଣୀ ଦି'ଟା ବାହାଯୋଗ୍ୟା ଅବସ୍ଥାରେ ଘରେ ରହିଲେ । ସେଗୁଡ଼ାଙ୍କ ପାଠଶାଠ ପଢ଼େଇ, ବାପା ଓଲଟା ମୋ ଉପରେ ବୋଝ ବଢ଼େଇ ଦେଲେ । ପାଠ ନ ପଢ଼ିଥିଲେ, ଯାହା ତାହା ହାତରେ ଛନ୍ଦି ଦେଇଥିଲେ ଚଳନ୍ତା । ସେଥିରେ ପୁଣି ବାପାଙ୍କର ରୁମାଟିକ୍ ଯନ୍ତ୍ରଣା ଯେ, ଆଉ ଅଣ୍ଟା ସଳଖି ଚାଲିବୁଲି କରିପାରୁ ନାହାଁନ୍ତି । ରୋଜଗାର କହିଲେ ମୋତେ ଅନଶା । କିନ୍ତୁ ମୁଁ କ'ଣ କରିବ, କିଛୁ କୂଳ କିନାରା ପାଉନି ।

'ବୁଝିଲି'—ଚୁପି ଚୁପି ଦୁଃଖ ଓ ଲୁଣ୍ଠାମିଶା ଗଳାରେ ମାହ୍ୟାଇ କହେ— କେତେଟା ଟଙ୍କା କୋଉଠୁ ଯୋଗାଡ଼କରି ଏଗୁଡ଼ାଙ୍କ ମୁହଁ ଉପରକୁ ଫିଙ୍ଗି ଦିଅ; ଚାକିରି ହେଲେ ସବୁ ହେଇଯିବ ।

—ଅନୁମାନ, କେତେ ?

'ଦି' ହଜାର ଖଣ୍ଡେ'—ବୁଜି ବୁଜି ହେଇଆସୁଥିବା ଅବସ୍ଥାରେ ଆଖି ରଖି ଏତକ କହିଲେ ମାହ୍ୟାଇ ।

—ହଁ, ଯୋଗାଡ଼ କରିହେବ ଯେ—ବନ୍ଧାଛନ୍ଦା ପଡ଼ି ଆଣି ପାରିବ । କିନ୍ତୁ ମୁଁ ତ କାହାକୁ ଦିଆନିଆ କରିପାରିବନି । ମୁଁ ଆପଣଙ୍କୁ ଆଣି ଦେଇଯିବ । ତେଣିକି ସବୁକଥା ବୁଝିବେ ଆପଣ ।

ବୈଷ୍ଣବୀୟ ବିନମ୍ରତା ଦେଖାଇ ମାହ୍ୟାଇ କହି ଉଠନ୍ତି,—ଦେଖ, ମତେ ସେଥିରେ ପୂରାନା । ମୁଁ ସେ ପାପରେ ସଂଶ୍ଳିଷ୍ଟ ହେବାକୁ ଚାହେଁନା; ବରଂ ଅନ୍ୟ କୌଣସି ବାଟେ ତମେ···

—ନା, ନା, ଆପଣ ମନା କଲେ ଚଳିବ ? ମୁଁ କାଲି ଆସି କୋଉଠୁ ହେଲେ ଯୋଗାଡ଼-ଯନ୍ତ୍ରକରି ଆପଣଙ୍କ ଘରେ ଦେଇଯିବ ।

'ହେଇଟି, କଥାଟା ଯେମିତି କାନକୁ ଦି'କାନ ନକର' । ଆଖିକୁ ବଡ଼ କରିବାର ଯେତେ ସମ୍ଭାବନା ଅଛି, ସେତିକି ବଡ଼କରି ମାହ୍ୟାଇ କହେ—'ମୁଁ ଏଥିରେ ପଶିଲିଣି ମାନେ ସବୁ କଥା ଦୁରୁସ୍ତ । ଦବଟି ଲେଖି ତମ ଘର ଠିକଣାଟା । କାମ ହେଇଗଲେ କିମ୍ବା ପୁଣି କିଛି ଦରକାର ପଡ଼ିଲେ, ପକେଇଦେବି ଖଣ୍ଡେ ଚିଠି ତମ ସାଙ୍ଗ ନାଁରେ । ମୋ ନାଁ, କି ମୋ ହସ୍ତାକ୍ଷର ସେଥେରେ ରହିବ ? ଆଲୋ ମାଆଲୋ ! ମୋ ଚାକିରି ଖଣ୍ଡିକ ଚାଲିଯିବ । କେବଳ ତମରିପାଇଁ ଏ ବଦସାହସ କରୁଛି ।

କୃତାର୍ଥକୃତାର୍ଥହେଇ ଚାଲିଯାଏ ପ୍ରାର୍ଥୀ ଜଣକ ।

ସେ ଗୃହଗଲା ପରେ ମାହ୍ୟାଇ ଅତି ସନ୍ତର୍ପଣରେ ଲୁହା ଆଲମାରି ଖୋଲେ ଏବଂ ସଦ୍ୟ ପହଞ୍ଚିଥିବା ଫଟିକ୍ ନମ୍ବର ସହ କ୍ୟାରିଅର୍ ନମ୍ବରର ଅଙ୍କ କଷେ ସେଇ ପ୍ରାର୍ଥୀ ଜଣକର । ଉଜ୍ଜ୍ୱଳ ଆଶାକୁ ଆହୁରି ଦୋଫାଳିଆ ମୁହଁରେ ଭାରି ଦରଫୁଟା ହସଫୁଲ ଫୁଟି ଉଠେ ।



ଏବଂ ପୁଣି ଆଉ କାହା ସହିତ···

ଦରକାର ପଡ଼ିଲେ କଥାହୁଏ ମାହ୍ୟାଇ ।

'କାଇଁକି ବାରମ୍ବାର ଇଠିକି ଆସି ଝମେଲ ଲଗେଇଚ ଭାଇ ! ମୋ ଚାକିରିଟା କ'ଣ ନବ ! ଭୁଚ୍ଛାକୁତ ଇଠି କାହାରି କାହାରି ଗହଳି ଦେଖି, ଲୋକେ ମନଗଢ଼ା କେତେ କଥା କହି ଯାଉଛନ୍ତି । ଏଠି ଉପର ମୁଣ୍ଡରେ ଟଙ୍କା ପଇସା ଚାଲିଚ···ଧୂମ୍ ଟଙ୍କା ! ···ଶଅଲା, ହାଡ଼ଗିଲା ଦଲ ! ଖାଉଚ ଘିଅ ଖାଅ,··· ଆମ ସମସ୍ତଙ୍କୁ ବଦନାମ କରୁଚ କାହିଁକି ?

—ମାହ୍ୟାଇ ! ···ମୋ କଥାଟିକେ ଶୁଣ ମ ! ଫର୍ ହେଭେନ୍ ସେକ୍, କହୁଚ—ତମଛଡ଼ା ମୋର ଏଠି ଭରସା କିଏ ଅଛି କହିଲ ? ଓଃ ସେଇ ଭୂକୁଣ୍ଡା-ମୁହାଁ ମେମ୍ବରବୁଢ଼ାଙ୍କୁ ଚାହିଁଦେଲେ, ମୋ ଗୋଡ଼ ଆଉ ଶିରିଶିରେଇ ଉଠେ । ···ଶଃ, ସତେକି ସର୍ବଜ୍ଞ ! ଯୋଉ ପ୍ରଶ୍ନଗୋଟା ଲେଖା ପଚାରୁଛନ୍ତି ନା—ଗୁଡ଼ ।

ମଅଲ, ଆଉ ଖାଉଚ କିଏ କ ? ସେଇଗୁଡ଼ାକ । ଅରେ ବାବୁ, ଯେତେ ବାଉଁଶ ସେତେ ପୋଲ । ଯେତେ ଟଙ୍କା ପାଇଲେ କ'ଣ ହବ, ଆହୁରି ଲୋଭ । ମୁଁ ଏଗୁଡ଼ାଙ୍କୁ ହାଡ଼େ ହାଡ଼େ ଚିହ୍ନିଗଲିଣି । ହେଇତ, ତମ କଥା ଦେଖୁନା । ପାଞ୍ଚଟି ବଲ ପୋଷ୍ଟ । ଦଇଟାତ ସିଧା ଗଲା ସେମାନଙ୍କ ପେଟେ । ଆଉ ତିନିଟାପାଇଁ ତମେ ରହିଲ ପଞ୍ଚାଅଶୀ ଜଣ । ତମର ଅନ୍ୟ ସବୁଥିରେ ଭଲ ହେଲେବ, କ୍ୟାରିଅର୍ ଖୁବ୍ ଭଲ ଥିଲେବ—କ'ଣ ହବ, କିଏ କଇ ପାରିବ ?

ବସିଥିବା ଚେୟାର୍ ଖଣ୍ଡିକ ଯଥାସମ୍ଭବ ପାଖକୁ ଟାଣିଆଣି ପ୍ରାର୍ଥୀ ଜଣକ ଫିସ୍‌ଫିସ୍‌ହୋଇ ଅତି ଗୋପନୀୟ ଭାବରେ କହିବାକୁ ଆରମ୍ଭ କରେ,—ହେଇତ, ମାହ୍ୟାଇ ! ତମେ ତାରିଲେ ତାରିବ—ମାରିଲେ ମାରିବ । କ'ଣ କରିବା କହିଲ ! ମୁଁ ତ ସବୁକଥା ଶୁଣିଚି । ଏଠି ମୋର ପ୍ରକୃତ ଯୋଗ୍ୟତା ଯାହା ମୂଳରୁ ଚେଷ୍ଟା ନ କଲେ ଭେଲା ବୁଡ଼ିବ । ମତେ ବଞ୍ଚାଇବା ବାଟ କୁହ ।

ମୁହଁଟାକୁ ଭୁରୁଙ୍ଗାକରି, ଯତ୍‌ସାମାନ୍ୟ ବିରକ୍ତି ପ୍ରକାଶ ସହ ମାହ୍ୟାଇ କହେ—ଗୋବର ଖାତରେ ତ ପଶିଚ । ଯେଠି ଘିଅ ଗୋବର ଚକଟିବ ତ

ଚକଚିବ । ନୋହିଲେ ଚୁଡ଼୍‌କନା ଖସି ଆସି, ଗୋଡ଼ହାତ ଧୋଇ, ଲୋକ ଲଟଗେଇଦେଇ, ଜଣେ ଭଦ୍ରଲୋକ ଭଳି ବସି ପଡ଼ିବ । ଖାଆନ୍ତୁ ଯାହା ଖାଇବା କଥା ଏ ଶାଗୁଣା ଦଳ ।

—ମାହ୍ୟାଇ ! ସତ୍ରୁ ହବ ଯେ, ମତେ ଟିକେ ସାହାଯ୍ୟ କର ।

'ନାଇଁ ନାଇଁ ଭାଇ, ମତେ ସେଥେରେ ପୂରାନା । ମତେ ମାଫ୍‌କର ।'

ଏକରକମ ସେ ଜାଗା ଛାଡ଼ି ଯିବାର ଉପକ୍ରମ ଆରମ୍ଭ ହେଇଯାଏ ମାହ୍ୟାଇର ।

—ମାହ୍ୟାଇ ! ମୋ ମୁହଁକୁ ଟିକେ ଚାହାଁ !···

ଦେଖ, ଏଇଚ ଅଡୁଆ !

—ମନ୍ଦ, ମୁଁ କ'ଣ ନିଜ ଭାଇଭଳି ନୁହେଁ ? ଦବାକୁ ମୁଁ ପ୍ରସ୍ତୁତ । ଯେ କୌଣସି ଉପାୟରେ ମୋର ଚାକିରିଟା ଦରକାର । କିନ୍ତୁ ବାଣ··· ? ଯଦି ନେଇକରି କିଛି ନକଲେ ?

ଏଁ ! ଏତେ ସାହସ ! ହକ୍ ନେଇ କାମ ନକଲେ ଆମେ ଛାଡ଼ି ଦବା ? କଡ଼ା ବରକଡ଼ା କରି ଫେରେଇ ଆଣିବାନି ! ପାଣିରେ ଘର କରି କୁମ୍ଭୀର ସାଙ୍ଗରେ ବାଦ ! ତା' ଛଡ଼ା ଆମେ ପୁରା ଥୋପଟା ପକେଇଦବା କାହିଁକି ? ଥୋଡ଼ା ଥୋଡ଼ା କରି ଦବା ନେଇଁ ? ଆଗ କିଛି ଦବା; କାମ ହେଇଯିବାର ସୁରାକ୍ ପାଇଲେ ଆଉ କିଛି । ଏମିତି ହବନା— !···ତେବେ ଏ କାମ ବଡ଼ ଝିଂଝଟ୍ । ଖାଲି ତମରି ଯକାଶେ ମୁଁ···

—ମୋ ଭାଇଟା ପରି ! ମୋ ଲାଗି ଟିକିଏ କଷ୍ଟ କର । ପ୍ଲିଜ୍—ଏଭଳିଆ ଫେର ଯାଗାରେ ତମଭଳି ଲୋକ କେମିତି ରହିପାରିଛନ୍ତି କେଜାଣି ? ଧନ୍ୟ କହିବ···

ଉଦାସ ଅପରାହ୍ଣର ଆକାଶଭଳି ମୁହଁଟାକୁ ଗମ୍ଭୀରକରି ମାହ୍ୟାଇ କହି ଉଠିଲା, ଚାକିରି ଛାଡ଼ିଦବାକୁ ବହୁଥର ଭାବିଲିଣି ଯେ ! ଖାଲି ପିଲାଛୁଆଙ୍କ ମୁହଁକୁ ଚାହିଁ କିଛି କରିବାକୁ ସତ ବଳୁନି । ସେମାନେ ଟିକେ ବଡ ହେଇଯାଆନ୍ତୁ; ତେଣିକି ମୋ କାମ ମୁଁ କରିବି । ଏ ଶଳେ ଖାଇବେ ଯେ, ଶହ ଭିତର କଥା ନୁହଁ । ହଜାରି—ପାଞ୍ଚ···ଦଶ···

—ଆଁ ଆଇଁ... ।

ତଥାପି ବ ଧର୍ମ ସନ୍ଧୁଚ ତାଙ୍କୁ ।

—ତେବେ...

ସେଇଆ କର । ଥର ଥର କର ଆଣି ଦେଇଯା; ଲଫାଫା ଭିତରେ ବନ୍ଦକର ଆଣିଦବ । ମୁଁ ସେଗୁଡ଼ାକ ଏ ହାତରେ ଛୁଇଁବ ନାଇଁ । ସ୍ନାଲଷ ପାପର ଛୁଟିକା ମୋ ଦହରେ କାଇଁକ ଲଗିବ ? ମଝିରେ ମଝିରେ ମୁଁ ତମ ପାଖକୁ କାହା ହାତରେ ଚିଠିଲେଖେଇ ପଠେଇ ଦଉଥିବ । ହେଲତ ଭଲ, ନହେଲ ତ ଫେରସ୍ତ । ଆମ ଧନ ତ ଚୋରମାଲ ନୁହେଁ ଯେ, ଫିଙ୍ଗି ଦବା ଖାଲ ଗୋଟାଏ ଗୃନ୍ସ...

—ହଁ, ଗୃନ୍ସଟେ ନବା ।

ଦେଖ, ଯାହା ଭଲ ଭାବୁଚ କର ।

—ଆଉ ଭଲ କ'ଣ ? ସେଇସ୍ନାତ !

ମାହ୍ୟାଇ ଗୃର ଆଡ଼କୁ ନଜର ପହଁରେଇ ନେଇ କହ ଉଠନ୍ତ, ତମେ ଯା—ଏଠି ଆଉ ବସନ । ବେଶୀ ସମୟ ବସିଲେ ସମସ୍ତେ ମତେ ସନ୍ଦେହ କରବେ । କହବେ, ମାରୁ ଲେକଙ୍କ ସମର୍ଥ ଇଏ । ଗୁଡ଼, ତମେ ଯାଇ ସେଇ କାମକର...

ପ୍ରାର୍ଥୀଟି ସସମ୍ମାନେ ପ୍ରଣାମଟିଏ ଜଣାଇ ଗୃଲଗଲ ପରେ,—

ଷ୍ଟିଲ ଆଲମାର ଖୋଲବାର ଶବ୍ଦ ଶୁଭେ । ମାହ୍ୟାଇ ମୁହଁର କଛୁ ହସ ଏଣେ ତେଣେ ଛୁଟ୍କ ପଡ଼େ । ପୁଣି ସେ ଗମ୍ଭୀର ହେଇଯାଏ । ସଚେତ୍କ ତଳେ ପଡ଼ଯାଉଥିବା ଟୁକୁଡ଼ା ଟୁକୁଡ଼ା ଖୁସିକୁ ସେ ପୁଣି ଆଲମାର ଭିତରେ ନେଇ ବନ୍ଦ କରଦଉଚ । ସିଆଡ଼ୁ ଡାକର ଆସେ—'ମାହାଣ୍ଟି'...

କାମର ମଣିଷ ସେ...

କାମରେ ବାହାର ଯାଏ ।

ଫେର ଆସେ ପୁଣି ମୁହଁକୁ ଗମ୍ଭୀର କର । "ଇଣ୍ଟରଭିଉ କଲ୍ ପଠାଇଦଅ ।" ଆଦେଶ ମିଳଚ । ସେଇ ସେଇ ନାଁ ଗୁଡାକ ଅଛୁତ ?—

ମନରେ ଅନେକ ଆଗ୍ରହ, ଅନେକ ସଂଶୟ ।

ଭାର ବ୍ୟସ୍ତ ସେ...



ମୌସୁମୀର ସମ୍ଭାବନା ଜାଣିଲେ, ଗଛରେ ଫୁଲ ଫୁଟେ । ଏବଂ ସେଇଭଳି ଏକ ସମ୍ଭାବ୍ୟ ପର୍ବ ଦେଖିଲେ ମାହ୍ୟାଇ ପ୍ରଗଲ୍‌ଭ ହୁଏ । ନଚେତ୍ ସେ କଥା କହେ ଖୁବ୍ କମ୍ ।

ମାହ୍ୟାଇ ଏବେ ବି ସେ ଅଫିସରେ ଅଛି । ଚାକିରି ଛାଡ଼ି ନାହିଁ । କିମ୍ବା ଛାଡ଼ିବାର ସମ୍ଭାବନା ନାହିଁ । ତାର ଶାଖା ପ୍ରଶାଖା ବଢ଼ୁଚି ବହୁ ରୂପରେ···

ଏବେ ବି ସେ ପ୍ରତିଦିନ ମନ୍ଦିର ଦର୍ଶନ କଲାପରେ ଅଫିସ ଯାଉଚି ।

ତଥାପି ବି ସେ ସମସ୍ତଙ୍କ ମାହ୍ୟାଇ !

ମାହ୍ୟାଇ ଲୋକ ହିସାବରେ ଭଲ ।

